# ଇଣ୍ଡୋନେସିଆର ଲୋକକଥା

## ଦ୍ୱିତୀୟ ଭାଗ

ଶ୍ରୀ ସୁରେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂହ



# ଇଣ୍ଡୋନେସିଆର ଲୋକକଥା

## ଦ୍ୱିତୀୟ ଭାଗ

ଡକ୍ଟର ଶୁଭେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂହ

ବିଦ୍ୟାପୁରୀ

ମୁଦ୍ରଣ, ୧୯୮୯

ପ୍ରକାଶକ

ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

ମୁଦ୍ରଣ

ଗ୍ରାମସେବକ ସମବାୟ ପ୍ରକାଶନ ଲିଃ
ବାଖରାବାଦ, କଟକ ୭୫୩ ୦୦୨

ମୂଲ୍ୟ—ଟ ୭.୦୦

# ସୂଚୀ


| ବିଷୟ | ପୃଷ୍ଠା |
|---|---|
| ୧ । ବାନ୍ଧୁଓ୍ୱାଙ୍ଗି | ୧ |
| ୨ । ଛୁଆଙ୍କୁ ପିଟିଲେ ମାଙ୍କଡ଼ ହେବେ | ୫ |
| ୩ । ଚଡ଼େଇ ଫାଶ ଓ ହରିଣ ଶିକାର | ୯ |
| ୪ । ଝିଅ ହେଲେ ମାରିବ | ୧୨ |
| ୫ । ବେଗିଣୀ ରାଜଜେମା | ୧୯ |
| ୬ । ଲେମ୍ବେ ଜଙ୍ଗସାଂ | ୨୬ |
| ୭ । ଇନ୍ଦ୍ରଜାଲର ଚପୀ | ୩୨ |
| ୮ । ଠିକ୍ କଥା | ୩୯ |
| ୯ । ପିଠାଫଳ | ୪୪ |
| ୧୦ । ମଳନ କୁନ୍ଦଙ୍ଗ | ୫୮ |

# ବାନ୍ୟୁଓ୍ୱାଙ୍ଗି

ଜବ ଦ୍ୱୀପର ପୂର୍ବଭାଗରେ ଅଛି ସହରଟିଏ । ଏ ସହରର ନାଁ ବାନ୍ୟୁଓ୍ୱାଙ୍ଗି । ଏ ସହରର ଏ ପାଖରେ ବାଲିଦ୍ୱୀପ । ଲୋକେ ଏଇଠୁ ବାଲିକୁ ଯାଆନ୍ତି । ବାନ୍ୟୁଓ୍ୱାଙ୍ଗି ତେଣୁ ବେଶ୍ ଗୋଟିଏ ଜଣାଶୁଣା ଜାଗା ।

ଏହାର ଆଖ ପାଖ ଖୁବ୍ ଉର୍ବର । ଏଠି ଧାନ ଆଉ ଅନ୍ୟଫସଲ ଖୁବ୍ ହୁଏ । ସାରା ଦ୍ୱୀପରେ ଏମିତି ଉର୍ବର ଜାଗା ଆଉ ନାହିଁ କହିଲେ ଚଳେ । ବାନ୍ୟୁଓ୍ୱାଙ୍ଗିକୁ ଜବ ଦ୍ୱୀପର ଧାନକ୍ଷେତ ବୋଲି କହନ୍ତି ।

ଏଇଠି ଆଗେ ଜଣେ ରଜାଥିଲେ । ତାଙ୍କର ଥାଆନ୍ତି ଜଣେ ମନ୍ତ୍ରୀ । ମନ୍ତ୍ରୀଙ୍କ ସ୍ତ୍ରୀ ଯେମିତି ସୁନ୍ଦରୀ···ସେମିତି ଗୁଣବତୀ । ସେ ମନ୍ତ୍ରୀଙ୍କୁ ଖୁସି କରିବାକୁ ସବୁବେଳେ ଲାଗିଥାଆନ୍ତି । ମନ୍ତ୍ରୀ ବି ତାଙ୍କ ସ୍ତ୍ରୀଙ୍କୁ ଶରଧା କରୁଥାଆନ୍ତି । ମାତ୍ର ମନ୍ତ୍ରୀଙ୍କ ମାଆବୁଢ଼ୀ ବୋହୂକୁ ଆଦୌ ପସନ୍ଦ କରେନା । ସେ ଦିନରାତି ଖାଲି ଖୁଣିବାରେ ଲାଗିଥାଏ । ଗଲେ ଅଇଲେ ବୋହୂର ଦୋଷ ଦେଖାଇ ଅନେକ ଉଲୁଗୁଣା ଦିଏ । ଗାଳିରେ ପୋତି ପକାଏ । ବୋହୂଟି ସବୁ ଶୁଣେ । ଜବାବ୍ ଦିଏନା କିଛି । ମୁଣ୍ଡପାତି ସବୁ ସହିଯାଏ । ମନକୁ ମନ କହେ ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି ।

ମନ୍ତ୍ରୀ ଏକଥା ଜାଣନ୍ତି । ସେ ତାଙ୍କସ୍ତ୍ରୀଙ୍କି କହନ୍ତି;<br>'ଶାଶୂ ନୁହେଁ ସେ ମାଆ ପରିକା ମଣିବ ସଦାବେଳେ,<br>ତେବେ ସିନାଏ ଦୁନିଆଁ ଠାରେ ରହିବ ସୁଖମେଳେ ॥'

ସ୍ୱାମୀର କଥା ମାନି ସେ ଶାଶୁର ସବୁ ଗାଳି ଗୁଲଜ ସହିଯାଆନ୍ତି । ମାନ ଅପମାନକୁ ସେ ଗଳାରମାଳପରି ଲମ୍ବାଇ ଥାଆନ୍ତି । କୌଣସିମତେ

ବାନ ଗ୍ଳଲଥାଏ । ଶାଶୁ ଖାଲି ବେଳ ଉଣ୍ଡି ବସିଥାଏ । କଥାକଅଣକ ବୋହୂଟି ସାଧାରଣ ଘର ଝିଅ । ଶାଶୁ ଗ୍ଳହୁଁଥିଲି ରଜା ଜମିଦାର କ ସାଧବଘରୁ ବୋହୂ ଆଣିଥାଆନ୍ତା । ସେ ବୋହୂ, ଘରକୁ ଆଣିଥାଆନ୍ତା ଅନେକ ଧନରତ୍ନ । ମାତ୍ର ଏ ବୋହୂଟିକି ପୁଅ ବାଛିଲା । ଗରିବଘରର ! କ ଯୌତୁକ କ ଜନଷପାତ୍ର ସେ ଆଣନ୍ତା ! ସେଥିଲାଗି ଶାଶୂର ବେଶି ରାଗ !

ଏପରି ଭବରେ ପ୍ରାୟ ପାଞ୍ଚ ବରଷ ବତିଗଲା । ଥରେ ରଜା ଗୋଟାଏ ବଡ଼ କାମରେ ମନ୍ତ୍ରୀଙ୍କି ଗୋଟିଏ ଦୂର ଜାଗାକୁ ପଠାଇଲେ । ମନ୍ତ୍ରୀ ସେଠି ରହୁ ରହୁ ଦୁଇ ତନମାସ ରହିଲେ ।

ଏ ଭିତରେ ଶାଶୁ ବୋହୂଟି ଉପରେ ନାନା କଦର୍ଥନା କରି ଗ୍ଳଲଥାଏ । ବୋହୂଟି ଏ ସବୁ ସହି ସହି ପଥର ପରି ହୋଇଯାଇଥାଏ । ତା' ଦହରେ ଆଉ ମାଉଁସ ନଥାଏ ବୋଲି ଜାଣ । ଦହଟାରେ ଖାଲି କଣ୍ଠା ଦୋହଲୁଥାଏ ।

ପୁଅ ଫେରିଲା । ମାଆ ବଖାଣିବସିଲା ଅନେକକଥା । ଏ ବୋହୂଟି ବଡ଼ ଅମଙ୍ଗଳୀ । ଏ ବୋହୂଟିର ଗୁଣ ଭଲ ନାହିଁ । ଯେ ତୋତେ ସୁଖପାଏନ ଇତ୍ୟାଦ ଇତ୍ୟାଦ ।

ମାଆର କଥାରେ ପୁଅରମନ ବିଲ୍‌କୁଲ୍ ଟଳେଇଗଲା । ସେ ଭୁଲି-ଗଲେଯେ ସେ ଜଣେ ମନ୍ତ୍ରୀ; ଦେଶ ଚଳାଇବାରେ ସିଏ ରଜାଙ୍କ ଡାହାଣ ଭୁଜ । ସେ ଖୁବ୍ ରାଗିଗଲେ । ଆଉ ତାଙ୍କ ସ୍ତ୍ରୀକୁ ଏଣୁ ତେଣୁ ଗାଳଦେଲେ । କହଲେ; ଏଭଳି ସ୍ତ୍ରୀକୁ ରଖିବ ନାହିଁ···ରଖିବନା···ମୁହଁ ଗ୍ଳହିଁବନାହିଁ ।

ବିଚ୍ଛାରି ସ୍ୱାମୀଙ୍କୁ ବହୁତ ନେହୁରା ହେଲେ । ନଜର କଥା ଯେତେ କହିବସିଲେ ବି ମନ୍ତ୍ରୀ ମୋଟେ ଶୁଣିଲେନ । ଶେଷକୁ କାନ୍ଦ କାନ୍ଦ କହିଲେ,

'କପାଳ ଆଦର ଯାଉଛଜେ ମୁଇଁ
ତମ ଘରଛାଡ଼ ଯାଉଛ,
ଶାଶୁ ଯାହା ଯାହା ଅପବାଦ ଦେଲେ
ସେଇବୋଝ ବୋହିନେଉଛ !



ପାପରେ ଥିଲେ ମୋ' କୋଳର ନନ୍ଦନ
ଗୁହର ପଣକା ବାସିବ,
ଠିକ୍ ରହିଥିଲେ ସେଇ ପୁଅ ଗୋଟି
ରୂପାଗୁନ୍ଦପରି ହସିବ,
ଚନ୍ଦନ ପରକା ବାସିବ ॥'

ଗର୍ଭବତୀ ଥାଆନ୍ତି । ଏକାକୀ ସେ ଘରଗୁଡ଼ ବାହାରିଗଲେ । ସେଇ ସହର ପାଖରେ ବହୁଥାଏ ନଈଟିଏ । ସେଇ ନଈକୂଳରେ ପହଞ୍ଚିଲେ । ଆଗରୁ ବହୁ କଷ୍ଟ ଦୁଃଖରେ ଭାଙ୍ଗି ପଡ଼ିଥିଲେ । ଖାଇବା ପିଇବାର ଠିକ୍ ନ ଥାଏ । ପେଟରେ ପିଲା ! ଏ ଅବସ୍ଥାରେ ସେ ଆଉ ଆଗକୁ ଯାଇ ପାରିଲେନି । ସେଇ ନଈକୂଳରେ ସେ ହାଲିଆ ହୋଇ ବସି ପଡ଼ିଲେ । ବୁଡ଼ିଗଲା ଚେତା ।

ତା'ର ଭିତରେ ସିଏ ଜନ୍ମଦେଲେ ଗୋଟିଏ ଶିଶୁକୁ । ତା'ପରେ ସେ କ୍ଷୁଧା ଭୋଷିଦେଇ ପ୍ରାଣତ୍ୟାଗ କଲେ । ନୂଆ ଶିଶୁଟି ବି ମରିଗଲା ।

ଏ ଖବର ପାଇ ସେଠାରେ ମନ୍ତ୍ରୀ ଓ ସେ ସହରର ବହୁ ଲୋକ ସେଠି ଜମାହୋଇଗଲେ । ଏକ ମଧ୍ୟର ମହକରେ ଗୃହଆଡ଼ ଭରି ଯାଇଥାଏ ।

ସେମାନେ ସେଠି ପହଞ୍ଚି ଏକ ଅଦ୍ଭୁତ ଦୃଶ୍ୟ ଦେଖିଲେ । ନଈରେ ଫୁଟିଛି ଦୁଇଟି ଫୁଲ । ସେଠି ନାହାନ୍ତି ମାଆ ଓ ଶିଶୁ । ସେମିତି ଫୁଲ ସେଠି କେବେ ନ ଥିଲା । ସେ ଫୁଲର ସୁଗନ୍ଧରେ ଗୃହଆଡ଼ ମହ ମହ ବାସୁଛି ।

ଏ ସମୟରେ ଶୂନ୍ୟବାଣୀ ହେଲା,
'ଏଇଯୋଡ଼ ଫୁଲ ଦୁଇ ମହ ମହ ବାସଇ,
ସିଏ ଚଷ୍ଟ ମାଆ ପୁଅ ପାପ ଯେତେ ନାଶଇ ।
ଦୁନିଆଁରେ ନୂଆଫୁଲ ନାଆଁ ଜଳ-ମହକ,
ଯୁଗେ ଯୁଗେ ଜାଇଥିବେ ଦୁହେଁ ହସ ହସକ ।'

ମନ୍ତ୍ରୀ ସବୁ କଥା ଶୁଣି ଦୁଃଖରେ ଭାଙ୍ଗିଗଲେ । ତାଙ୍କ ମାଆ ଆଡ଼କୁ ଅନାଇଲେ; କିନ୍ତୁ ସେ ବୁଢ଼ୀ ମୁହଁ ବୁଲାଇନେଲା । ମନ୍ତ୍ରୀଙ୍କ ଆଖିରୁ ଦୁଇଧାର ଲୁହ ଝରିପଡ଼ିଲା ।



# ଛୁଆଙ୍କୁ ପିଟିଲେ ମାଙ୍କଡ଼ ହେବେ

ଦ୍ୱୀପଟିଏ । ଖୁବ୍ ଛୋଟ, ଖୁବ୍ ସାନ । ନାଁ ତା'ର ସେଟି । ସେଟି ଦ୍ୱୀପରେ ଖାଲି ଗାଁ । ପୁଣି ଗାଁଗୁଡ଼ିକ ବେଶ୍ ଛୋଟ ଛୋଟ । ସେଇପରି ଗୋଟିଏ ଗାଁରେ ରହୁଥେ.ବୁଢ଼ୀଟିଏ । ସାଙ୍ଗରେ ଥାଏ ତା'ର ନାତୁଣୀଟିଏ, ଛୋଟ ଝିଅଟିଏ ।

ଜେଜୀ ଆଉ ନାତୁଣୀ ଥାଆନ୍ତି ଛୋଟ ଘର ଗୋଟିକରେ । ସେଇ ଘରକୁ ଲାଗି ବୁଢ଼ୀର ଅଳ୍ପ କିଛି ଜମି । ବୁଢ଼ୀଟି କାମର ମଣିଷ । ଟିକେ ବସି ରହେନି । କାମରେ ଲାଗିଥାଏ । ଦିନସାରା ଭୂଇଁ କାମରେ ଲାଗିଥାଏ । ନାତୁଣୀଟି ବି ତାକୁ ସାହାଯ୍ୟକରେ । ତେଣୁ ସେମାନଙ୍କ ଘର ଚାରିପାଖେ ସେମାନେ ଚାଷକରନ୍ତି ଧାନ, ଚିନାବାଦାମ ଆଉ ଜାତିଜାତିକା ପନିପରିବା । ଏଥିରେ ସେମାନଙ୍କର ଅନେକ ଗୁଜୁରାଣ ଚଳିଯାଏ । ତଥାପି ବୁଢ଼ୀଟି ଯାଏ ନିକଟରେ ସମୁଦ୍ରକୁ । ସେ ମାଛ ଧରେ । ନିତି କିଛିନାକିଛି ମାଛ ନିଶ୍ଚୟ ଧରିବ । ଘରକୁ ଆଣିବ । ଭାତ ସାଙ୍ଗକୁ ମାଛ ତରକାରି । ବୁଢ଼ୀ ଓ ତା' ନାତୁଣୀ ଖୁବ୍ ଖୁସିରେ ଚଳନ୍ତି ।

ବୁଢ଼ୀ ଯାଏ ବାହାରକୁ, ଘରେ ଥାଏ ଛୋଟନାତୁଣୀଟି । ସେ ଘର ଝାଡ଼ୁକରେ । ରୋଷାଇ ବାସ କରେ । ସୂର୍ଯ୍ୟ ଆକାଶର ମଝିରେ ହେବାବେଳକୁ ଫେରେ ବୁଢ଼ୀ । ସାଥିରେ ଆଣିଥାଏ ଟୋକେଇଏ ମାଛ । ରନ୍ଧାବଢ଼ା ହୁଏ । ଦିହେଁ ବେଶ୍ ଆନନ୍ଦରେ ଚଳନ୍ତି ।

ଦିନକର କଥା······!

ବୁଢ଼ୀ ମାଛ ଧରିବାକୁ ବାହାରିଲା । ଯିବା ଆଗରୁ ନାତୁଣୀକି କହିଲା । 'ଏଇ ମୁଁ ଗଲିଲି । ଗୋଟିଏ ଚାଉଳ ରାନ୍ଧିବୁ । ସେଇଥିରେ ଆମ ଦି ଜଣଙ୍କ ଖାଇବା ହୋଇଯିବ । ବୁଝିଲୁତ ! ଗୋଟିଏ ଚାଉଳ ରାନ୍ଧିବୁ··· ଗୋଟିଏ ଚାଉଳ ।'

ବୁଢ଼ୀଟି ସମୁଦ୍ର କୂଳକୁ ଚାଲିଗଲା । ବଡ଼ ଚିନ୍ତାରେ ପଡ଼ିଗଲା ଝିଅ ନାତୁଣୀଟି । ଗୋଟିଏ ମୁଠାଏ ଚାଉଳ ସେ ରାନ୍ଧିବ କେମିତି ! କେତେ ପାଣି ଦେବ···! ସେଥିରେ ଭାତ ବା ହେବ କେତେ ! ଦୁଇଜଣ ଖାଇବେଟି !! ଜେଜୀ ଆଉ ଭୁଲ କହିଲେ କି ?

ସେ ନିଆଁ ଜାଳିଲା । ପାଣି ବସାଇଲା । ସେ ଗଲା ସେଇ ଜାଗାକୁ ଯୋଉଠି ଜେଜୀ ଚାଉଳ ରଖିଥିଲେ । ତା' ଛୋଟ ହାତରେ ସେ ଧରିଲା ଦୁଇମୁଠି ଚାଉଳ ।

ପାଣି ଗରମ ହେଲାଣି । ସେଁ ସେଁ ଡାକିଲାଣି ! ଏଇ ଗବ୍ ଗବ୍ ଫୁଟୁଛି । ଝିଅଟି ଚାଉଳ ଦି ମୁଠାକ ପକାଇଲା ସେ ହାଣ୍ଡିରେ । ଘୋଡ଼ାଇ ଦେଲା ପଲମଟା । ତା'ହେଲେ ଅଳପ ଜାଳରେ ଭାତ ହୋଇଯିବ । ବେଗି ହେବ ।

ପ୍ରାୟ ଘଣ୍ଟାକ ପରେ······

ସେ କାଢ଼ିଦେଲା ପଲମଟା । ଆରେ, ଏ କ'ଣ ? ହାଣ୍ଡିଟା ଉଛୁଳି ଯାଉଛି ! ଭାତ ଉତୁରି ଯାଉଛି । ଗରମ ତୋରାଣି ବହୁଛି । ଗରମଭାତକୁ ସାଙ୍ଗରେ ନେଇ ଯାଉଛି । ଖାଲି ବହୁଛି ତ ବହୁଛି । ସେ ବୁଦ୍ଧି ପାଉନାହିଁ କିଛି । ଡର ହେଲାଣି ଛୁଆଟି ! ପାଟି କରୁଛି···'ଜେଜୀ ଗୋ···ବେଗିଆସ କେଉଁଠି ଅଛ ଜେଜୀ···! ମୁଁ କଣ କରିବି ଗୋ ଜେଜୀ !!'

ସେ ପାଟିକରି ଡାକୁଥାଏ । ଏଣେ ଆଖିରୁ ଲୁହ ବହୁଥାଏ । କାନ୍ଦୁଥାଏ । ଭାତରେ ଦେଖାଇଘରଟା ପୂରିଗଲାଣି ।

ଭାତ ଘର ପୂରି ବାହାରକୁ ବହିବା ଆରମ୍ଭକଲାଣି । ସାମ୍ନା ପାଖ ଦୁଆରଟା ସାରା ଭାତ । ଝିଅଟି ଏଥର ଘର ଦୁଆର ଛାଡ଼ି ବାହାରି ଆସିଲା । ଆରେ, ଭାତ ସବୁ ତା' ପଛେ ପଛେ ବହି ଚାଲିଛି ଯେ ! ସେ ପାଖ ନଈଆଡ଼କୁ ଗଲା । ଭାତର ସୁଅ ଲମ୍ବିଛି ତା' ପଛରେ ?

ସେ ପାଖରୁ ଜେଜୀ ବୁଢ଼ୀ ଆସୁଥାଏ । ଜେଜୀ ପଚାରିଲା, 'ଆଲୋ, ଏମିତି ଧାଇଁଛୁ କିଆଁ ?' ଝିଅଟି କହି ପାରୁନାହିଁ କିଛି, ତା' ପାଟି ଖନି

ବାଜଗଲା । ସିଏ ଖାଲି ପଛ ଆଡ଼କୁ ଅଙ୍ଗୁଳିଠାର ଦେଖାଇଦେଲା । ମାଡ଼ ମାଡ଼ ଆସୁଚି ଭୂତର ସୁଅ !

ବୁଢ଼ୀ ଭଗି ନଆଁ ବାଣ ହୋଇଗଲା । ସେ ଏଡ଼େ ପାଟିକରି ଉଠିଲା, 'ତୁ କଣ କଲୁରେ...

ସବୁ ମାରି ଦେଲୁରେ...!!'

ବୁଢ଼ୀ ଗୋଟାଇଲା ବାଡ଼ିଟାଏ ! ନାତୁଣୀକି ବାଡ଼େଇଲା ଗୋଗଛ । ଝିଅଟି ବକଲରେ ଭେଁ ଭେଁ ରଡ଼ିଛାଡ଼ି କାନ୍ଦୁଥାଏ ।



'ମୋତେ ପିଟନି ଜେଜୀ ! ମୁଁ...ମ...ରି...ଯି...ବି...!! ଝିଅଟି ତଳେ ପଡ଼ିଗଲା । ତାର ଚେତା ନଥାଏ ।

ହଠାତ୍ ସେ ଝିଅଟି କୁଆଡ଼େ ଉଭାନ୍ ହୋଇଗଲା । ତା' ବଦଳରେ ଖପ୍‌କରି ଡେଇଁପଡ଼ିଲା ଗୋଟେ ମାଙ୍କଡ଼ଟିଏ । ସେ ମାଙ୍କଡ଼ଟି ହସିଲା, ଡେଇଁଲା । ଡେଇଁ ଡେଇଁ ପାଖର ଗୋଟେ ଗଛକୁ ଉଠିଗଲା ।

ମେଇଠି ବସିଲା ଡାଳରେ ସେ ମାଙ୍କଡ଼ । ବୁଢ଼ୀକି ଖତେଇ ହେଲା । ମାଙ୍କଡ଼ କହିଲା,

‘ଜେଜାମ...ଜେଜା...,
ନାତୁଣୀ ତୋହର ଗଲାଣି ହଜି,
ହଜିଗଲା ନ ଯେ ମଲା ଆଜି !!’

‘ଆରେ ମାଙ୍କଡ଼, ତୁ ଏ କ’ଣ କହୁଚୁ’? ବୁଢ଼ୀ ଆଶ୍ଚର୍ଯ୍ୟରେ ପଚାରିଲା ।

ମାଙ୍କଡ଼ ପୁଣି କହିଲା,

‘କହିବାକୁ କିଛି ଅଛି କି ଆଉ ?
କିଏ ଦେବ ରାନ୍ଧି ଭାତ ବା ଜାଉ ?
ଏକାକୀ ଏଥର ତମେ ରହିବ,
ତମ ମାଡ଼ ଦାଉ କିଏ ସହିବ ?
ତମ ମାଡ଼ ଖାଇ ବାନର ହେଲି,
ଏଥର ତମଠୁଁ ପାର ପାଇଲି !!’

ବୁଢ଼ୀର ମନରେ ବହୁତ ଦୁଃଖ, ଏ କ’ଣ ମୁଁ କଲି ! ଏଡ଼େ ଟିକେ ଛୁଆକୁ କେତେ ମାରିଲି ! ନାତୁଣୀ ଯେ ହେଲା ବାନର ! ଏକାକୀ ହେଲି । ମୋ’ ସୁଖ ଦୁଃଖର ସାଥିକି ହରାଇଲି, ମୁଁ ଚଣ୍ଡାଳୁଣୀ କ’ଣ ବୁଦ୍ଧି କଲି !

ବୁଢ଼ୀ ମୁଣ୍ଡ କୋଡ଼ି କାନ୍ଦିଲା । ତା’ପରେ ସେ ଟିକି ମାଙ୍କଡ଼କୁ ଡାକିଲା । ହେଲେ, ଟିକି ମାଙ୍କଡ଼ଟି କୁଆଡ଼େ ଉଭେଇଗଲା ।

ସେଇଦିନୁ ସେ ବେଟିଝାପୁରେ ନିଜର ଛୁଆକୁ କେହି ପିଟନ୍ତିନି... ପର ଛୁଆକୁ ବି ପିଟନ୍ତିନି । ସେମାନେ ଭାବନ୍ତି ମାଡ଼ଖାଇ ଛୁଆମାନେ ମାଙ୍କଡ଼ ହୋଇ ଯିବେ ।



# ଚଢ଼େଇ ଫାଶ ଓ ହରଣ ଶିକାର

'ବାବା' !···ମି କେବାୟୁନ୍ ତା' ଶ୍ୱଶୁରଙ୍କୁ କହିଲା, ଚାଲ, ଦିହେଁ ମିଳି ଗୋଟାଏ ବଡ଼ ଗାତ ଖୋଳିବା । ଫାଶ ବସାଇବା··· ହରିଣ ଫାଶ । ବଡ଼ ହରିଣ ଟାଏ ମିଳିଗଲେ, ଆମର ଅନେକ ଦିନ ମଜାରେ କଟିଯିବ ।'

କେବାୟୁନ୍ ଶ୍ୱଶୁର ଟିକେ ସୁସ୍ଥିଲୋକ । କାମଧନ୍ଦା ପ୍ରତି ସେତେ ନଜର ନାହିଁ । ସେ ଅଳସେଇଲା । ସେ ଭାବୁଥାଏ, ଏତେ ପରିଶ୍ରମ କରିବ କିଏ ! ସେ କହିଲା, ନା···ନା ! ତୁମେ ନିଜେ ଖୋଳ । ତୁମ-ସହିତ ମୁଁ କାମକରି ପାରିବିନି । ମୁଁ ଚଢ଼େଇ ଫାଶ ବସାଇବି ।'

କେବାୟୁନ୍ କହିଲା, 'ହଉ ହେଲା ! ଯାହା ତମର ଇଚ୍ଛା ! ଭାବୁଚି; ମୋ' ଫାଶରେ ଯଦି ହରିଣଟାଏ ପଡ଼ିଲା, ତେବେ ତମର ଭାଗ ନିଶ୍ଚୟ ପାଇବ ।'

କିନ୍ତୁ ମୁହଁକୁ ଭେରେକେଟିଆ କରି ଶ୍ୱଶୁର କହିଲା 'ମୋ'ଠି ସେ କଥା ପଟିବନି । ମୋ' ଫାଶରେ ଚଢ଼େଇ ପଡ଼ିଲେ, ତୁମକୁ ଭାଗ ଦେବିନି ।'

ସେମାନେ ଅଲଗା ଅଲଗା ଜାଗାରେ ଫାଶ ବସାଇଲେ ।

ଶ୍ୱଶୁର ଉଠିଲା ଖୁବ୍ ସକାଳୁ । ସେ ଧାଇଁଲା ତା' ଜାଗାକୁ । ଚଢ଼େଇ ଫନ୍ଦିରେ କିଛି ନାହିଁ । ଖାଲି ପଡ଼ିଚି ଫାଶଟା । ସେ ଗଲା କେବାୟୁନ୍‌ର ଫାଶ ପାଖକୁ । ଆଃ ! ଖୁବ୍ ବଡ଼ ହରିଣଟାଏ ! ସତରେ ଜ୍ୱାଇଁଟା ଖୁବ୍ କପାଳିଆ ।

ଶ୍ୱଶୁର ମୁଣ୍ଡକୁ ଗୋଟେ ବୁଦ୍ଧି ଜୁଟିଲା । ସେ ଉପରେ ଉପରେ ଫାଇଦା ଉଠେଇବାକୁ ବସିଲା । ଗାଁଲୋକ ଲୋକମାନେ ସେମିତି ଧନ୍ଦା-କରି ନଜର ତୋଲି ପିଟନ୍ତି ।

ସେ ହରଣଟିକ ଆଣି ତା' ଫାଶରେ ବାନ୍ଧଦେଲା । ସେଇଟା ଯେମିତି ପଳାଇ ନ ଯାଏ, ତା'ର ସୁବିଧା ବି କରିଦେଲା । ତା'ପରେ ଫେରିଗଲା ଘରକୁ ।

ସେ ଉଠାଇଲା ଜ୍ୱାଇଁକୁ । '...ଉଠ...ଉଠ କେବାୟୁନ୍ ...ଉଠ ! ଚାଲ ଦେଖିବା କାହା ଫାଶରେ କ'ଣ ପଡ଼ିଛି ।' ରାତି ସେତେବେଳକୁ ପୂରା ପାଇ ନ ଥାଏ । କେବାୟୁନ୍ ଆଖିରୁ ନିଦ ପୂରା ଛାଡ଼ି ନ ଥାଏ । ସେ ତା' ଆଖିମଳିଲା । ମୁହଁ ଧୋଇଲା । ତା'ପରେ ଯିବେ ଗଲେ ସେଇ ସ୍ଥାନକୁ ।

ଶ୍ୱଶୁର ପାଟିକଲା, 'ଦେଖ କେବାୟୁନ୍, ଦେଖ ! ମୋ' ଫାଶରେ ପଡ଼ିଚି ହରିଣଟାଏ । ଦେଖ...ତମ ଫାଶ...! ଏଁ...ଏଠି କିଛି ନାହିଁ ! ଛି...ମାହାଳିଆ ଗଲା ତମର ଏତେ ମେହେନତ । ବେକାର ଏତେ ପରିଶ୍ରମ !!'

ସିକେବାୟୁନ୍ ଦୁଇଟି ଜାଗାକୁ ଠିକ୍ କରି ପରୀକ୍ଷା କରିନେଲା । ସେ ଯିବେ ଧରାଧରି କରି ହରିଣଟିକ ଘରକୁ ଆଣିଲେ ।

ଜଳଖିଆ ଖାଇବାବେଳ ହେଲା । ଶ୍ୱଶୁରରତ ମନ ଖୁସି ! ସେ ଜଳଖିଆ ଖାଇ ହାକୁଟି ମାରୁଥାଏ । ତା' ଝିଅ ପଚାରିଲା, 'ବାବା, ତମ ଜ୍ୱାଇଁ ସାଆନ୍ତେ ?'

'ଥିଲେତ ! ମୋ' ସଙ୍ଗେ ଯାଇଥିଲେ ଜଙ୍ଗଲକୁ । ତାଙ୍କ ଫାଶଟା ଖାଲି ! ତା' ପରେ ତ ଯିବେ ଆସିଲୁ ଘରକୁ ।'

'ଆସିଥିଲେ ଯେ...କୁଆଡ଼େ ଗଲେ ପୁଣି !'

'ଦେଖେ...!'

ଶ୍ୱଶୁର ବାହାରିଗଲା ସି କେବାୟୁନ୍‌କୁ ଖୋଜି । କେବାୟୁନକୁ ନଈକୂଳରେ ଦେଖିଲା ସେ । ନଈକୁ ଦେଖୁଥାଏ କେବାୟୁନ୍ !

'ଏଠି କ'ଣ କରୁଚ ? ଶ୍ୱଶୁର ପଚାରିଲା ।

'ଦେଖୁଚି !' ଉତ୍ତର ଦେଲା ଜ୍ୱାଇଁ !

'କ'ଣ ଦେଖୁଚ ?' ଶ୍ୱଶୁର କଣ୍ଠରେ ଆଗ୍ରହ ।

'ଏ ନଈଟା କେମିତି ତଳଆଡ଼ୁ ଉପରକୁ ଉଠୁଚି···'କହିଲା କେବାୟୁନ୍ ।

'ମିଛକଥା । ନଈ ସବୁବେଳେ ଉପରୁ ବହେ ତଳକୁ । ତମେ ଏ ଅଦ୍ଭୁତ କଥା କହୁଚ କିପରି ! କାହିଁ, ମୁଁ ତ ଦେଖି ପାରୁନ କିଛି !'

'ଆଃ ! ତମେ ଜାଣିନା ବାବା, ଏକଥାଟା ପରା ଏଇ ସକାଳରୁ ଆରମ୍ଭ ହେଇଚି ! ନଈ ଆଉ ଆଗପରି ଉପରୁ ତଳକୁ ବହୁନ ।'

'ଅସମ୍ଭବ ! ମୁଁ ତ ଜାଣେନ !'

'ତମେ ଭଲକରି ଜାଣ !'

'କେମିତି ?'

କହିଲା;

'ଚଢ଼େଇ ଫାଶଟା ଛୁଡ଼େଇ ପାରିନ

ହରିଣ ପଡ଼ିଚି ଧରା,

ନଈ ବାପୁଡ଼ାଟା ତଳରୁ ସେଇଥି

ଉପରକୁ ବହେ ପରା !'

ଶ୍ୱଶୁରଙ୍କୁ ଲାଜ ଲାଗିଲା । ସେ ସତକଥା ମାନିନେଲା । ସେ ଜାଣିଲା ଯି କେବାୟୁନ୍ ଯେମିତି ପରିଶ୍ରମୀ, ସେମିତି ବୁଦ୍ଧିଆ ।

ମାତ୍ର କେବାୟୁନ୍ ଅଳସୁଆ ଓ ଠକ ଶ୍ୱଶୁରଙ୍କୁ ତା'ର ବେଶ୍ ଭଲପାଠ ପଢ଼େଇଲା । ସିଏ ହରିଣ ମାଉଁସରୁ ଫୁଟେ ବି ଦେଲାନି । ସିଏ ଖାଇଲା ମାଉଁସ । ଶ୍ୱଶୁର ଆଗରେ କୁଢ଼େଇ ଦେଲା, ଗୁଡ଼ାଏ ହାଡ଼···କଣ୍ଟା ।



## ଝିଅ ହେଲେ ମାରିବ···

ବହୁତ ବହୁତ ଦିନ ତଳର କଥା । ଇଣ୍ଡୋନେସିଆର ଇରିଯ୍ୟାନ ପାଖରେ ଜଣେ ରାଜା ରହୁଥିଲେ ।

ଥରେ ରାଜାଙ୍କୁ ବହୁଦୂରକୁ ଯିବାକୁ ପଡ଼ିଲା । ସେତେବେଳକୁ ରାଣୀ ଗର୍ଭବତୀ ଥାଆନ୍ତି । ଯିବା ଆଗରୁ ସେ ତାଙ୍କ ଲୋକମାନଙ୍କୁ କହି-ଯାଇଥିଲେ ରାଣୀଙ୍କର ସବୁ ଭଲମନ୍ଦ ବୁଝିବାପାଇଁ । ଆଉ କହିଥିଲେ,

'ପୁଅ ଜାତ ହେଲେ ଯତନେ ପାଳିବ
 ମୋହର ଆସିବା ଯାଏ,
ଝିଅ ଜାତ ହେଲେ ମାରି ଫିଙ୍ଗିଦେବ,
 ଗୃହିଁବିନି ତା'ର ମୁହେଁ ।'

'ରଜା ଏତିକ କହିଲେ, ବାହାରିଗଲେ । ତାଙ୍କର ଲୋକେ ରାଣୀଙ୍କ ସେବାଯତନ କଲେ । ଛ'ମାସ ବିତିଗଲା । ରାଣୀଙ୍କର ଛୁଆଟିଏ ହେଲା । ମାତ୍ର ଏ ନ ଥିଲା ପୁଅ । ଏ ଥିଲା ଗୋଟିଏ ଝିଅ । ଝିଅଟିର ନାଁ ଦିଆଗଲା ବୁଣୀ । ଦେବ କନ୍ୟାରରୂପ ପରି ରୂପ । ଠିକ ସତ୍ରୁ ଓଠ । ମନ୍ଦାର ରଙ୍ଗପରି ନାଲି । କଳା କଳା ଆଖି । ଚମ୍ପା ପାଖୁଡ଼ାପରି ରଙ୍ଗ ତା' ଦେହର । ଏମିତି ସୁନ୍ଦରିଆ ଝିଅଟିଏ ଜନ୍ମିଲା କଥାଁ ! ରାଣୀଙ୍କ ଜୀବନ ଆକୁଳ ହୋଇ ଉଠିଲା । ହାଇରେ ଦଇବ ! ଏପ୍ରକାର ରତନକୁ ନେଇ ମୁଁ କ'ଣ କରିବ ! ଏହା ପରି ଶିଶୁକୁ ମାରି ଦିଆଯିବ ! ନା···ନା, ସେ ତାଙ୍କ ଝିଅଟିକ ଏମିତି ଭାବେ ମରିବାକୁ ଦେବେନି । ତାକୁ ସେ କୌଣସିମତେ ରକ୍ଷା କରିବେ । ରାଣୀଙ୍କ ଆଖିରୁ ଲୁହର ଆଷାଢ଼ ଶ୍ରାବଣ ଝରି ଯାଉଥାଏ; ଆଉ ସେ ମନେମନେ ତାଙ୍କର ଆଗଲା ଜୀବନ ବିଷୟରେ ଭାବି ଗୃଲିଥାଆନ୍ତି ।

ସେଇ ଜନ୍ମଦିନ ରାତିରେ···

ସମସ୍ତେ ଶୋଇ ଗଲେଣି ରାଜବାଟୀରେ । ଅନ୍ଧାର ଘେରି ଯାଇଛି ଗୃରିଆଡ଼ । ରାଣୀଙ୍କୁ ବଡ଼ ଅବଶ ଲାଗୁଛି । ହାତଗୋଡ଼ ଚଳୁନି । ବଳ

ପାଉନ କୁଆଡ଼େ ଯିବାକୁ । ମାସ ଡେଇ ହେଲେ ହେବ ବୁଢ଼ବ । ତାଙ୍କୁ କିଛି ଗୋଟାଏ କରିବାକୁ ହେବ···ଆଉ କରିବାକୁ ହେବ ଖୁବ୍ ବେଗି । ଯୋଉ ଝିଅଟିକି ସିଏ ଜନମ ଦେଇଚନ୍ତି, ତାଙ୍କୁ ବଞ୍ଚାଇବାକୁ ହେବ । ଦୁନିଆଁ ବୁଡ଼ଯାଉ, କିଛି ଯାଏଆସେନି । ଦୁନିଆଁ ତାଙ୍କୁ ନିନ୍ଦାକରୁ, ପରବାସ୍ତ ନାଇଁ । ଏଇଟି ତାଙ୍କର ପ୍ରଥମ ସନ୍ତାନ । ରଜାଙ୍କ ଲୋକେ ତାଙ୍କୁ ହାଣିଦେବେ, ତଣ୍ଟି ଚିପିଦେବେ, ସେ ସହିବେ କେମିତି ? ସେ ଯେ ମାଆ !

ଥରଥର ଦେହ । ଥରଥର ଗୋଡ଼ । ଥରଥର ହାତ । କିନ୍ତୁ ଆଖିରେ ଜଳନ୍ତି ନିଆଁ । ସେ ନିଆଁଟା ଦାଉ ଦାଉ ଜଳୁଚି । ସେଇ ନିଆଁରେ ଲୁଚିଚି ମାଆପଣ । ଥିର୍‌କରି ଛୁଆଟିକି ଉଠାଇଲେ ରାଣୀ । ପିଠିରେ ବାନ୍ଧିଲେ ଝୁଲିଟାଏ । କିଛି ରେଶମ କପଡ଼ାରେ ଘୋଡ଼ାଇଲେ ଝିଅକୁ । ତା'ପରେ ଥିର୍‌କରି ସେ ଉଆସଭିତରୁ ବାହାରି ଆସିଲେ । ଜୀବନରେ ଉଆସଛଡ଼ା ବାହାର ଦୁନିଆଁ ବିଷୟରେ ସେ ଖୁବ୍ କମ୍ ଜାଣିଥିଲେ । କିନ୍ତୁ ନିଜ ଛୁଆଟିକି ବଞ୍ଚାଇବାଲାଗି ସେ ଆଜି ସବୁ ଛାଡ଼ିଲେ । ଉଆସର କେତେ ଅଧ୍ୟପ କୁଆଡ଼େ ଗଲା ! ରାତାରାତି ସେ ବହୁତ ଦୂରକୁ ଚାଲିଗଲେ । ସାଥିରେ କେବଳ ଥାଆନ୍ତି ଦୁଇଟି ସହଚରୀ ଆଉ ଗୋଟିଏ ବଲେଇ ।

ଏ ଭିତରେ ଫେରି ଆସିଲେ ରଜା । ଦେଖିଲେ ଉଆସରେ ନାହାନ୍ତି ରାଣୀ । ଲୋକଙ୍କଠୁ ବୁଝିଲେ, ଝିଅକୁ ଧରି ରାଣୀ ପଳାଇ ଯାଇଚନ୍ତି । ସଙ୍ଗେ ସଙ୍ଗେ ସେ ଆଦେଶଦେଲେ ରାଣୀଙ୍କି ଖୋଜିଆଣିବାକୁ ।

ରଜାଙ୍କ ଚାକର ଖେଦିଗଲେ ଦେଶସାରା । ସେମାନେ ବହୁ ନଈ, ନାଳ ଡେଇଁଲେ । ଅନେକ ପାହାଡ଼ ପର୍ବତ ପାରିହେଲେ । ଅଝାଡ଼ଝାଡ଼ ଜଙ୍ଗଲରେ ପହଞ୍ଚିଲେ । ପାଇଲେ ରାଣୀଙ୍କି ।

ରାଣୀ କହିଲେ,

'ରଜାଙ୍କୁ କହିବ, ଆଦେଶ ରଜାର
ଝିଅକୁ ମାରିବାପାଇଁ
ବାପା ସିଏସିନା ନିଠୁର ହୋଇଲେ
ମାଆ ମୁଁ ପାରିଲିନାଇଁ ।
ତେଣୁ ମୁଁଇ ଯିବିନାଇଁ ॥'

ଘରୁ ଫେରିଗଲେ ।

ରାଣୀ ସିନା ମନା କରିଦେଲେ ଯିବାକୁ, ତାଙ୍କ ମନ ବଥେଇଲା । ରାଜାଙ୍କୁ ଅନେକ ଦିନରୁ ଦେଖିନାହାନ୍ତି । ସିଏତ ଏ ଝିଅର ବାବା ! ଝିଅକୁ ଟିକେ ଦେଖିବେନି !

ରାଣୀ ମନକୁମନ ସହଚରୀ ଦୁ'ଜଣଙ୍କୁ ଧରି ଫେରି ଆସିଲେ । ପିଠିରେ ଝୁଲି । ଝୁଲିରେ ରହିଚି ଝିଅଟି ।

ସେ ରାଜାଙ୍କୁ ମୁଣ୍ଡିଆ ମାରିଲେ । କହିଲେ,
'ରଜାଙ୍କୁ ଡରି ମୁଁ ପଳାଇଥିଲି ହେ
ବରି କହିବାରୁ ଫେରି ଅଇଲି
ତମରି ଝିଅଏ ପାଇଲି ଛୁଆ ହେ
ମୁହଁକୁ ତାହାର ଦେଖିବ ବୋଲି
ମୁଁ ଫେରି ଅଇଲି ।'

ରାଜା ଦେଖିଲେ ଟିକି ଝିଅଟିକି । ତାଙ୍କର ଆଖି ଖୋସି ହୋଇଗଲା । ଏଡ଼େ ସୁନ୍ଦର ଏ ଝିଅଟି ହୋଇଚି ! ତାଙ୍କ ଅଜାଣତରେ ଗୋଟାଏ ଦୁଃଖୀକାର୍ଣ୍ଣି ଦୀର୍ଘଶ୍ୱାସ ବାହାରିଗଲା ! କି ଭୁଲ ହୋଇଗଲା ! ଏଇ ଝିଅକୁ ମାରିଦେବାକୁ ସେ କହିଥିଲେ ! ନା...ନା, ଏ ଝିଅ ରହିବ । ଏହାକୁ କେହି ମାରି ପାରିବେ ନି ।



ରାଣୀ କହିଲେ, 'ହଜୁର, ଆପଣ ରାଜା । ଆପଣଙ୍କ କଥାଟା ଦେଶପାଇଁ ଆଇନ୍ । ଆପଣ ଯାହା କହିଲେ, ତା'ର ଗୋଟେ ମୂଲ୍ୟ ଅଛି । ସେ କଥା ତଳେ ପଡ଼ିବା ଉଚିତ ନୁହେଁ । ତେଣୁ ଯାହା କହିଥିଲେ, ତାହା ଅନ୍ୟଥା ହେବା ଉଚିତ ନୁହେଁ ।'

'ମାନେ ! କ'ଣ କହୁଚ ରାଣୀ ?'

'ବୁର୍ଣୀକୁ ମାରି ଦିଆଯିବ ।'

'ଏକଥା କହିପାରୁଚ ?'

'ରାଜାର ସମ୍ମାନ ପାଇଁ...!

'ନା...ନା...ନା...।'

'ରାଜାର ଆଦେଶ ପାଣିର ଗାର ନୁହେଁ ରାଜା !'

ରାଣୀ କାଠର ସିନ୍ଦୁକଟାଏ ତିଆରି କରାଇଲେ । ତା' ଭିତରେ ରଖିଲେ ବୁର୍ଣୀକେମାଙ୍କୁ । ରଖିଲେ କିଛି ଖାଦ୍ୟ । ଆଉ ଥିଲା ଗୋଟାଏ ବାଲେଇ ।

ତା'ପରେ ସେମାନେ ଗଲେ ସମୁଦ୍ର ଭିତରକୁ । ଜାହାଜରେ ଥାଇ ସେ କହିଲେ ।

'ବାପା ମାଆ ହୋଇଥିଲେ ସାଧାରଣ ଲୋକ,
ଭାସିବ ସିନ୍ଦୁକ
ବାପା ମାଆ ହୋଇଥିଲେ ରାଣୀ ଆଉ ରାଜା
ସିନ୍ଦୁକ ବୁଡ଼ଯା !'

ସିନ୍ଦୁକଟିକି ଜଳରେ ମେଲି ଦିଆଗଲା । ସଙ୍ଗେ ସଙ୍ଗେ ସିନ୍ଦୁକଟି ବୁଡ଼ିଗଲା । ରାଣୀ କରୁଣସ୍ୱରରେ କାନ୍ଦିଉଠିଲେ । ତା'ପରେ ସେ ବି ଲୁଚିଗଲେ ସମୁଦ୍ର ଜଳରେ ।

ରାଜାଙ୍କ ମନ ଭାଙ୍ଗିଗଲା । ସେ ଠିକ୍‌କଲେ ଦେଶ ଛାଡ଼ିଚାଲିଯିବେ । ପ୍ରଥମ ଛୁଆଟିକି ହରାଇ ସେଠି ରହିବାକୁ ତାଙ୍କର ମନ ବଳିଲାନି । ସେ ବୋଇତ ବାନ୍ଧିଲେ । ସାଙ୍ଗରେ କେତେକ ଲୋକ ଆଉ ରାଣୀଙ୍କ ଆଗର ସହଚରୀ ଦୁଇଜଣ ।

ନାନାଆଡ଼ ବୁଲିବୁଲି ବୋଇତ ଚାଲିଥାଏ । ହଠାତ୍ ଗୋଟାଏ ଜାଗାରେ ବୋଇତ ଚଳିଲାନି । ଗୋଟାଏ ଜାଗାରେ ସ୍ଥିର ହୋଇ ରହିଲା । ପାଲଗୁଡ଼ା ନଇଁଗଲା ।

ଅନେକ ଧନଧର ବୋଇତ ସେଇଠି ରହିଲା । ସବୁ ଲୋକଙ୍କୁ ନିଦ ଆସିଲା । ରାଣୀଙ୍କ ସେଇ ଦୁଇ ସହଚରୀ ଖାଲି ଚେଇଁ ଥାଆନ୍ତି । ସମୁଦ୍ରତଳୁ କାହାର କଥା ଶୁଭୁଚି ! ସେମାନେ ଡର ଘୁନଆ ହେଇଗଲେ । କିନ୍ତୁ ସେ ଶବ୍ଦଟି କହିଲା, 'ତମ ରାଜାରାଣୀ ଝିଅ ମୁଇଁ

ଏଇଠାରେ ମୁଁ ଯେ ରହିଅଛି
ଛାଡ଼ିପାରୁ ନାହିଁ କେଉଁପରି
ଜୀବନ କଥା ମୋ' କହୁଅଛି ।'

ତା'ପରେ ସେମାନେ ସ୍ଥିର ହେଲେ । ସେମାନେ ଜାଣିପାରିଲେ ବୁଡ଼ୀଜେମା କହୁଛନ୍ତି । ବୁଡ଼ୀଜେମା କହିଲେ ସେ ରହନ୍ତି ସମୁଦ୍ର ତଳରେ । ସେ ତାଙ୍କ ମା'ଙ୍କ ସହଚରୀମାନଙ୍କୁ କହିଲେ, ମୁଁ ତମକୁ ସାହାଯ୍ୟ କରିବ । ତମେ ମୋ' କାମ କରିବ ନା !'

ସେମାନେ ରାଜିହେଲେ ।

ବୁଡ଼ୀଜେମା ସେମାନଙ୍କୁ ଖାଇବାକୁ ଦେଲେ । ଆଉ ଦେଲେ ଗୋଟାଏ ବୋତଲ । ସେ ବୋତଲଟି ଖାନାରେ ଭର୍ତି । ଯେତେ ଖାଇଲେ କେବେ ସରେନି । ଜେମା କହିଲେ, 'ଏ ବୋତଲକୁ ସଙ୍ଗରେ ନେଇଯାଅ । ଯୋଉଠି ଦେଖିବ, ଜଣେ ଲୋକ ତା' ଦୁଆର ମୁହଁରେ ବସିଚି, ବଳ ଦେବ ତାକୁ ।'

'ଆଉ ଆମେ ଏଠୁ ଯିବୁ କେମିତି !
'ଚିନ୍ତା ନାଇଁ ତମେ କୁହ !
ଦକ୍ଷିଣ ବାଆ ଆସ
ଉତ୍ତର ବାଆ ଆସ
ଭସାଇ ନିଅ ବୋଇତଟିକ
ଦୂର ପରବାସ !"

ସେମାନେ ସେମିତି କଲେ । ବୋଇତ ମୁକୁଳିଗଲା । ବୋଇତ ଭସିଲା । ସେମାନେ ବହୁ ଦେଶ ଦେଶାନ୍ତର ଗଲେ । ଥରେ ଗୋଟିଏ ବନ୍ଦରରେ ଓହ୍ଲାଇଲେ ଏ ଦିହେଁ । ଜେମାଙ୍କ କଥା ମନେ ଥାଏ । ବୋତଲଟି ନେଇ ଥାଆନ୍ତି ସାଥିରେ ।

ଏଇଠି ଲୋକଙ୍କଭିତରେ ଗୋଟାଏ ଅଦ୍ଭୁତ ଘଟଣା । ଏଠି ସମସ୍ତେ ଦ୍ୱାରପାଖରେ ବସିଥିବା ଯେମାନେ ଦେଖିପାରିଲେ । ବୋତଲଟି ବିକିବାରେ ତେଣୁ ସେମାନଙ୍କର କିଛି ଅସୁବିଧା ହେଲାନି ।

ଯୋଉ ଲୋକଟି ବୋତଲ କିଣିଲା, ସେ ଏମାନଙ୍କୁ କିଛି ଟଙ୍କା ପଇସା ଦେଲାନି । ସେ ଦେଲା ଗୋଟାଏ ସୁନାର ହାର । ହାରଧରି ଫେରି ଆସିଲେ ଯେ ଦୁଇଜଣ ନାଗ ।

ଏଥର ଲେଉଟାଣି ଯାତ୍ରା । ବୋଇତ ଫେରିଚାଲିଲା । ଆସି ପହଞ୍ଚିଲା ପୁଣି ସେଇଠି । ବୋଇତ ତ ଚଳେ । ବନ୍ଦ ରହିଲା ସେଠି ।

ବୁଢୀଜେମା ପଚାରିଲେ, 'ମୋ' କାମ କରିଚ ?'
'କରିଚି ମଣିମା !'
'ଆଉ କିଛି ?
'ଏଇ ସୁନାହାର !'

'ଦିଅ !' ଗୋଟିଏ ଗୁପ୍ତ ମୂର୍ତ୍ତିର ହାତ ଲମ୍ବିଗଲା । ଏମାନଙ୍କ ହାତରୁ ନେଇଗଲା ସୁନାହାର ।

ତା'ପରେ ପବନ ବହିଲା । ବୋଇତ ଚାଲିଲା । ରାଜାଙ୍କ ବୋଇତ ଫେରିଗଲା ତାଙ୍କ ମୁଲକକୁ ।

ଯୋଉ ଲୋକଟି ସେ ବୋତଲ କିଣିଥିଲା, ସିଏ ସମୁଦ୍ରକୂଳକୁ ଆସିଲା । ହାତରେ ବୋତଲ । ଉପରକୁ ଟେକିଲା ସେ ବୋତଲଟାକୁ । କହିଲା, ।

'ନାଗ ଦୁଇଜଣ କହିଲେ ଯାହା
ହୋଇଥିବ ଯଦି ସତ,
ସତ ହୋଇଥିବ ରଜାର ଆଦେଶ
ରଜାଝିଅ ରୁଇ ସତ,
ଯୋଉଠି ଅଛି ସେ ରଜାଝିଅ
ଶୁଖିଯା ସମୁଦ୍ର ଶୁଖିଯାଆ
ଶୁଖିଯା ସମୁଦ୍ର ଶୁଖିଯାଆ !!'

ସେ ଏତିକ କହିବା ପରେ ପରେ ସମୁଦ୍ର ଶୁଖିବା ଆରମ୍ଭ କଲା । ବେଶ୍ ଶୁଖି ଠୋ ଠୋ ହୋଇଗଲା । ସେ ସମୁଦ୍ର ଭିତରକୁ ଗ୍ଲଲା । ବାଲି···ବାଲି···ବାଲି । ସେ ଲୋକଟି ଗ୍ଲୁଚି ତ ଗ୍ଲୁଚି ।

ଶେଷରେ ଗୋଟାଏ ସୁନ୍ଦର ଜାଗାରେ ପହଞ୍ଚିଲା । ସେଠି ଥାଏ ଗୋଟାଏ ରତ୍ନମୟ କୋଠା । ସେ କୋଠାର ସାମ୍ନା ଫାଟକରେ ଠିଆ ହୋଇ ରହିଥାଏ ଜଣେ ଅପୂର୍ବ ସୁନ୍ଦର କନ୍ୟା ।

ବୁଢୀଜେମା ପଚ଼ାରିଲେ, ତମେ ମୋ' ବୋତଲ ପାଇଲ କେମିତି ?'

ସେ ଲୋକଟି ପଚ଼ାରିଲା, 'ତମେ ଏ ସୁନାମାଳ ପାଇଲ କେମିତି ? ଏତ ମୋ' ସୁନାମାଳ !!'

ସେମାନେ ପରସ୍ପରକୁ ଚିହ୍ନିଲେ । ପରସ୍ପରକୁ ସୁଖ ପାଇଲେ । ତା'ପରେ ସେମାନଙ୍କ ବାହାଘର ହେଲା । ସେଇଠୁ ସେମାନେ ଗୋଟାଏ ନୂଆ ରାଜ୍ୟ ସ୍ଥାପନ କଲେ । ଲୋକେ କହନ୍ତି ଇଶିମ୍ଯାନ୍ ପାଖରେ ଯୋଉ ଦ୍ୱୀପଟିକୁ 'କେପ୍ରୀ' କହନ୍ତି, ସେଇଟି କାଳେ ସେଇ ମୁଲକ । ବେଶ୍ ଖୁସିରେ ସେମାନେ ଅନେକ ଦିନ ରହିଲେ । ସୁଖରେ ପାଳିଲେ ଲୋକମାନଙ୍କୁ ।



# ରୋଗିଣୀ ରାଜକନ୍ୟା

ଲୁଉରେ ଜଣେ ରଜା ଥିଲେ। ବେଶ୍ ଅନେକଦିନ ତଳର ଏ କଥା। ଖୁବ୍ ଭଲ ରଜା। ମୁଲକଯାକର ଲୋକେ ତାଙ୍କୁ ଭକ୍ତି କରୁଥିଲେ। ସେ ଥିଲେ ପ୍ରଜାଙ୍କର ମାଆବାପା! ମାଆବାପା ପରି ଲୋକଙ୍କ ସୁଖ ଦୁଃଖ ବୁଝନ୍ତି। ଇଏତ ଏ ସଂସାରର ରୀତି। ଜଣେ ଜଣକର ଉପକାର କରୁ; ଆରଜଣଙ୍କ ତାକୁ ଅଲବତ୍ ମାନିବ, ଶ୍ରଦ୍ଧାକରିବ।

ଏ ରଜାଙ୍କର ପୁଅ ନ ଥିଲେ। ଥିଲା କେବଳ ଝିଅଟିଏ। ତେଣୁ ବାପାଙ୍କ ଅନ୍ତେ ସେ ରାଇଜର ସିଂହାସନରେ ବସିବାକଥା ଏ ଝିଅଟି। ଲୋକେ ଝିଅଟିକି ବି ଖୁବ୍ ଭଲ ପାଉଥିଲେ। ମାତ୍ର ରଜାଝିଅଟି ଥିଲା ରୋଗିଣୀ। ଛୁଆଟି ଦିନରୁ ତାକୁ ରୋଗ ଧରିଥିଲା। ବଡ଼ ବିଚିତ୍ର ଏ ରୋଗ। ଦେହ, ହାତ, ଗୋଡ଼, ମୁହଁ ସବୁ ଘା'। ପୂଜ ବାହାରୁଥିବ, ରକ୍ତ ବାହାରୁଥିବ, ଯିଏ ଦେଖିବ ଡରିଯିବ।

ବଡ଼ଲୋକଙ୍କୁ ଉତ୍ତର ନାହିଁ କି ସରଗକୁ ନିଶୁଣି ନାହିଁ। ଏଇ ମଝିରେ କେତେକାଳ ଗଲା। ଏଡେ ଭଲ ରଜା! ତାଙ୍କର ପୁଣି ଏମିତି ରୋଗିଣୀ ଝିଅଟିଏ! ଲୋକମାନେ ବହୁତ ଦୁଃଖ କରନ୍ତି। କେଉଁଠୁ ଏ ରୋଗ ଆସିଲା କେଜାଣି! ଏଇଥିପାଇଁ ଦିନେ ରଜା ଆଉ ପ୍ରଜାଙ୍କ ଭିତରେ ଅମେଳ ହେବ ହୁଏତ।

ରଜା ଚୁପ୍ ହୋଇ ବସି ନ ଥିଲେ। ସେ ମୁଲକଯାକର ବଇଦ, କବିରାଜଙ୍କୁ ଡକାଇଲେ। ବହୁ ଔଷଧ ମଉଷଧ ହେଲା। କେତେ ଚେରମୂଳ ବଟିକା ସେ ଛୁଆଟି ଗିଳିଲା। କେତେ ମଲମ, କେତେ ତେଇଲ ଲଗାଇଲା। କାହିଁରେ ସେ ରୋଗ ଭଲ ହେଲାନି! ବରଂ ଦିନକୁଦିନ ବଢ଼ିଲା।

ଲୋକମାନେ ବହୁତ ହାଇତୋଷି ହେଲେ। ସେମାନଙ୍କ ଭିତରେ ସବୁବେଳେ ସେଇ ଗୋଟିଏ କଥା! ରଜାଝିଅ ଏମିତି ରୋଗରେ ପଡ଼ିଲେ

ଦେଶ କଅଣ ହେବ ! ତା'ଛଡ଼ା ସେ ରୋଗ ଯଦି ଜଣେକରୁ ଦି' ଜଣ, ଦି' ଜଣରୁ ତିନିଜଣ ହେଲା; ତେବେ ତ ମୁସ୍କିଲ ! ସାରା ମୁଲକରେ ରୋଗ ଘର କରିଯିବ ! ରଜାଝିଅ ପାଇଁକି ମୁଲକଯାକର ଲୋକେ ରୋଗ ଭୋଗିବେ କାହିଁ !

ଝିଅଟି ମରିଯାନ୍ତା କି, କଣ୍ଟା ଯାଆନ୍ତା । ଏକଥା ଲୋକେ ଦୁଃଖର ସହିତ ଭାବନ୍ତି । କଣ୍ଟା ନୁହେଁ ଯେ, ନିଜେ ତରି ଯାଆନ୍ତା ! କେତେ କଷ୍ଟ ନ ଭୋଗୁଚି ! ସମସ୍ତେ ଇସି...ସି...ଥୁ...ଥୁ...କରୁଚନ୍ତି ! ତା' ଦେହରୁ କି ଆଇଁଷିଣିଆ ଗନ୍ଧ ବାହାରୁଚି !

କିଏ କହେ, ତାକୁ ମାରିଦେଲେ ତ ହୁଅନ୍ତା ! ମାତ୍ର ରଜାଝିଅ ସେ ! ତା' ଦେହରେ ରଜାର ରକ୍ତ ବହୁଚି ! ତାକୁ ମାରିବାକୁ ପୁରାଣ ଶାସ୍ତ୍ର ମନାକରିଚି । ପୂର୍ବର ବଡ଼ବଡ଼ିଆମାନେ ମନାକରିଚନ୍ତି । ତେଣୁ ତାକୁ ମାରିହେବନି । ଇଏ ବଡ଼ ଗୋଳମାଳିଆ କଥା ! ସହି ହେବନି କି କହି ହେବନି । ଜଣେ କିଏ କହିଲା ତାକୁ ଦେଶରୁ ବାହାର କରିଦେଲେ ସବୁ ଝାମେଲା ଯିବ ।

ଲୋକେ ଏମିତି କଥାଭାଷା ହେଲେ । ଠିକ୍‌କଲେ ରଜାଙ୍କୁ ଏକଥା କୁହାଯିବ । ହେଲେ, ରଜାଙ୍କ କାନକୁ ନବ କିଏ ! ବିଲେଇ ବେକରେ କିଏ ବାନ୍ଧିବ ଘଣ୍ଟି !

ଏମିତି ଭାଲେଣିରେ କିଛିଦିନ ଗଲା । ଶେଷକୁ ମନ୍ତ୍ରୀଙ୍କ କାନରେ ଏ କଥା ପଡ଼ିଲା । ରଜାଙ୍କୁବି କିଛି କିଛି ସୁରାକ୍ ପାଇଥିଲେ । ପ୍ରଜାଏ ଏଇ ଝିଅଟି ପାଇଁ ଯେ ଖୁସି ନୁହଁନ୍ତି, ସେ କଥା ସେ ଜାଣିଥିଲେ ।

ଦିନେ ଲୋକଙ୍କ ପକ୍ଷ ନେଇ ମନ୍ତ୍ରୀ କହିଲେ,

'ମହାରାଜ, ଅନୁମତି ଦେଲେ, ଗୋଟାଏ କଥା କହନ୍ତି ।'

'କୁହ ମନ୍ତ୍ରୀ । ତମ ପାଇଁ ଅନୁମତି କ'ଣ ଲୋଡ଼ା ?'

'ନା ମହାରାଜ, କଥାଟା ଖୁବ୍ ଦୁଃଖଦାୟକ, ଆଉ ନେମାଙ୍କ ବିଷୟ ବୋଲି ସାହସ ପାଉନି !'

'ନିର୍ଭୟରେ ତୁମେ କୁହ ମନ୍ତ୍ରୀ ।'

'ଲୋକେ କହନ୍ତି...'

'କ'ଣ କହନ୍ତି ?'

କହନ୍ତି 'ଗୋଟିଏ ଅଣ୍ଡା ଓ ଶହେ ଅଣ୍ଡା ଭିତରୁ···'

'ବୁଝିଲି ମନ୍ତ୍ରୀ···' ରଜାଙ୍କ ଆଖିରେ ଗୋଟାଏ କଳାଛାଇ ଉଠିଲା। ତାଙ୍କ ମୁହଁ ଥମଥମ। ଗଳା ରୁଦ୍ଧ। ସେ ଛେପ ଢୋକ ଢୋକ କହିଲେ, 'ଶହେ ଅଣ୍ଡା ମନ୍ତ୍ରୀ'

'ମୁଁ ଜାଣେ ହଜୁର, ଆପଣଙ୍କ ମନରେ ବଡ଼ ଆଘାତ ଆସିବ। ହେଲେ, ସବୁ ପ୍ରଜାଙ୍କ ଇଚ୍ଛା ଆଗରେ ମୁଁ ଆଉ ସମ୍ଭାଳି ପାରିଲିନି। ସେମାନେ କହୁଥିଲେ ମୁଲକ ଛାଡ଼ି ଚାଲିଯିବେ। କିନ୍ତୁ ଯିବା ଆଗରୁ···'

'ନା···ନା ମନ୍ତ୍ରୀ, ତା' ହୋଇପାରେନି। ଗୋଟିଏର ପାଇଁ ସାରା ମୁଲକକୁ ମୁଁ ଛାଡ଼ି ପାରିବନି। ଏ କଥା ତମେ ଲୋକଙ୍କୁ କହିଦିଅ।'

ରଜାଙ୍କ ବିଚାର କଥା ରାଇଜସାରା ଖେଳିଗଲା। ସବୁରି ମୁହଁରେ ପ୍ରଶଂସା! ଏମନ୍ତ ସିନା ରଜା! ପ୍ରଜାଙ୍କ ହିତ ପାଇଁ ଯିଏ ସବୁ ଛାଡ଼ି ପାରିବ ସିଏ ସିନା ରଜା ହେବାକୁ ଯୋଗ୍ୟ। ଏମିତି ଜଣେ ରଜା ପାଇଥିବାରୁ ମୁଲକଯାକର ଲୋକେ ନିଜକୁ ବଡ଼ ଭାଗ୍ୟବାନ୍ ମନେ କଲେ। ଆଉ କେତେକ କହିଲେ, ଧନ୍ୟରେ ବାପାର ଛାତି। ଯିଏ ନିଜର ଝିଅକୁ ବଳି ଦେଉଛି ଦଶ ଜଣଙ୍କ ପାଇଁ; ଧନ୍ୟ ତା'ର ବିଚାର। ଧନ୍ୟ ତା'ର ବୁକୁ।

ଖୁବ୍ ଶୀଘ୍ର ଗୋଟାଏ ବଡ଼ ବୋଇତ ସଜାହେଲା। ସେ ବୋଇତରେ ରହିଲା ଚାଉଳ, ଡାଲି, ତେଲ ଆଦି ଅନେକ ଅନେକ ଜିନିଷ। ଅନ୍ତତଃ ଗୋଟାଏ ବରଷ ଚଳିବା ପାଇଁ ସବୁ ଜିନିଷ ତା' ଭିତରେ ରହିଲା।

ଦିନ ଠିକ୍ ହେଲା। ଜେମାଙ୍କ ସଙ୍ଗରେ ଯିବାକୁ ତାଙ୍କର ଧୀବର ଆଗେଇ ଆସିଲା। ଆଉରି କେତେ ଲୋକବାକ ବି ଇଚ୍ଛାକଲେ ସାଥିରେ ଯିବାକୁ। ସେ ସମସ୍ତଙ୍କ ପାଇଁ ସବୁପ୍ରକାରର ବନ୍ଦୋବସ୍ତ ହେଲା। ଆଉ ଓ୍ୱାଲାମାଆ ନଦୀରେ ବୋଇତକୁ ମେଲି ଦିଆଗଲା। ଏଇପରି କେତୋଟି ଲୋକଙ୍କୁ ବୁକୁରେ ଧରି ଜେମାଙ୍କ ଜଳଯାତ୍ରା ଆରମ୍ଭ ହେଲା। ରଜା କାନ୍ଦି ଉଠିଲେ। କାନ୍ଦିଲେ ବି ରାଇଜର ଆଉ ଲୋକବାକ। ଜେମା ସେମାନଙ୍କୁ ଖୁସିମନରେ ମେଲାଣି ଦେଲେ। ବାବାଙ୍କୁ କହିଲେ,

ବାବା ହେ, ଏଇ ରୋଗିଣୀ ପାଇଁ'
ସହିଲ ବହୁ ଦୁଃଖ,

ଯାଉଚ ଆଜ ଅଜଣା ଦେଶ
ଯାଉଛି ମୋର ସୁଖ
କପାଳ ମୋର ଜୁହିଁଇ ଭଲ
ହେଉଚ କଲବଲ,
ମୋହର ପାଇଁ ସ୍ୱଇଜଗୋଷ୍ଠୀ
ହୋଇଚ ହରବର।
ଦେନବନାଇଁ ଦୋଷ ମୋହର
ଯାଉଚ ମୁଁ ତ ଦୂରରେ,
ଜାଣେନ କେବେ ମରିବ ଅବା
ଜୀଇବ କେଉଁ ଠାରେ ।’

ଦିନପରେ ଦିନ ଗଡ଼ିଗଲା । ଭସିଗଲା ବୋଇତ । ତା’ଭିତରେ ରଜାଝିଅ ମନଟି ମାରି ଲୁଚିରହି ଥାଆନ୍ତି । କେତେବେଳେ କେମିତି ଆସନ୍ତି ବାହାରକୁ ।

ହଠାତ୍ ଗୋଟାଏ ଜାଗାରେ ବୋଇତ ଚଳିଲାନି । ମାଝୀ କେଉଟମାନେ ବହୁତ ବଳ ଲଗାଇଲେ, ଖଟାଇଲେ ଅନେକ ବୁଦ୍ଧି ଆଉ କୌଶଳ । ସବୁ ପାଣି ଫାଟିଗଲା । ବୋଇତର କ’ଣ ହେଲା କେଜାଣି, ସେଠି ଆଗକୁ କି ପଛକୁ ଟିକେ ହେଲେ ଚଳିଲାନି ।

ଲୋକେ ପଚାରିଲେ ରଜାଝିଅଙ୍କୁ,
‘ଜେମା ଗୋ ଜେମା ବୋଇତଜମା
ଯାଉନି ଏଇଠାରେ’
ଜେମା କହିଲେ,
‘ଓହ୍ଲାଇ ଯାଅ ରହିବା ଅମେ
ଏଇ ନଦୀର କୂଳେ !’

ସମସ୍ତେ ଓହ୍ଲାଇ ଗଲେ । ଉତାରି ଆଣିଲେ ଜିନିଷପତ୍ର । କେତୋଟି କୁଡ଼ିଆ ତିଆରି ହୋଇଗଲା । ରଜାଝିଅ ଆଉ ସାଙ୍ଗରେ ଆସିଥିବା ଲୋକମାନେ ସେ ସବୁ କୁଡ଼ିଆରେ ରହିଲେ ।

ବେଶ୍ କଷ୍ଟସାଧ୍ୟ କରିଗଲା । ସେଠି ଖୁବ୍ ଘନ ଜଙ୍ଗଲ । ଲୋକେ ଜଙ୍ଗଲ ସଫାକଲେ । ଗାଁ ଲୋକମାନେ ଧାନ ବୁଣିଲେ । କୁଡ଼ିଆଗୁଡ଼ିକ ଆଖପାଖ ସୁନ୍ଦର ସୁନ୍ଦର ଧାନକ୍ଷେତରେ ଭରିଗଲା ।

ରଜାଝିଅ କିଛି କାମ କରନ୍ତିନି । କୁଡ଼ିଆ ଭିତରେ ସେ ବସିଥା'ନ୍ତି । ମାତ୍ର ସାଥିରେ ଥିବା ଲୋକଙ୍କୁ ଚଉକି କାର୍ହି ! ସେମାନେ ଖୁବ୍ ଖଟନ୍ତି । ଧୀରେ ଧୀରେ ସେଠି ଗଢ଼ିଉଠିଲା ଗୋଟିଏ ଛୋଟିଆ ବସ୍ତି । ଆଉ ସେଇ ଜେମା ହେଲେ ସେମାନଙ୍କର ସବୁ ।

ଦିନେ ଜେମା କୁଡ଼ିଆ ଭିତରେ ଏକେଲା ବସିଥାଆନ୍ତି । ପାଖ ଆଖରେ କେହି ଲୋକବାକ ନାହାନ୍ତି । ହଠାତ୍ ଗୋଟାଏ ବଡ଼ସଡ଼ ମଇଁଷି ଦେଖା ଦେଲା । ଦେହଟା ତା'ର ଧଳା । ଧଳା ଚମଡ଼ାଉପରେ ଧଳା ଲୋମ । ମଇଁଷିଟା ଜେମାଙ୍କ ଆଡ଼କୁ ଆସିଲା । ତାକୁ ଘଉଡ଼ାଇବାକୁ ଜେମା ହେ...ହେ ପାଟିକଲେ । ମଇଁଷିଟି ମାନିଲାନି । ସେ ଜେମାଙ୍କର ଖୁବ୍ ପାଖକୁ ଆସିଲା । ବଡ଼ଭୟ ଡରରେ ଥରିଲେ । ଶେଷରେ ଚୁନିଆଁ ହୋଇ ତଳେ ପଡ଼ିଗଲେ । ଆଉ ସେ ମଇଁଷିଟି ଜେମାଙ୍କୁ ଶୁଙ୍ଘିଲା । ଶୁଙ୍ଘି ଶୁଙ୍ଘି ତାଙ୍କୁ ଚାଟିବାକୁ ଲାଗିଲା । ମୁଣ୍ଡ ମୁହଁ, ଦେହ, ହାତ ଗୋଡ଼, ଅଙ୍ଗୁଳି ସବୁ ଚାଟିଲା ।

ତା' ପରେ କେତେବେଳେ ସେ କୁଆଡ଼େ ଗଲା, କେହି ଜାଣନ୍ତିନି । ଜେମା ଚେତାପାଇ ଉଠିଲାବେଳକୁ ଦେଖିଲେ, ସେ ମଇଁଷି ନାହିଁ । ତାଙ୍କ ଦେହସାରା ମଇଁଷି ଲାଳରେ ଜଉଜଉ । ମାତ୍ର ତାଙ୍କୁ ଖୁବ୍ ହାଲୁକା ଲାଗୁଛି । ଖୁବ୍ ଭଲ ଲାଗୁଛି ।



ଜେମା ନଦୀକୁ ଗଲେ । ଭଲକରି ଝୋଇଧୁଆଇ ହୋଇ ଗାଧୋଇଲେ । ତାଙ୍କ ଘା'ସବୁ ସଫା ହୋଇ ଯାଇଛି । ତାଙ୍କୁ ଚମତ୍କାରଭାବେ ସୁଖ ଲାଗୁଛି ।

ସେ ଏକଥା ତାଙ୍କ ଲୋକମାନଙ୍କୁ କହିଲେ । ପହିଲେ ଜଣେ ଦି' ଜଣ ଏ କଥାଟାକୁ ଖରାପ କଥାବୋଲି ଭାବିଲେ । ହେଲେ, ବୟସ୍କଲୋକେ ଏହାକୁ ଶୁଭ ଲକ୍ଷଣ ବୋଲି ବିଚାର କଲେ ।

ତା' ପରଠୁ ନିତି ଆସେ ସେ ମଇଁଷି ଜେମାଙ୍କୁ ତାକୁରୁ ଚାଳପାଯାଏ ଚାଟିଚାଟି ସଫା କରିଦିଏ । ଆଉ ଦେଖ, ଜେମାଙ୍କର ଘା' ଶୁଖି ଶୁଖି ଗଲା ସେ ଏକବାକ୍ ଭଲ ହୋଇ ଗଲେ । ତାଙ୍କର ଘା'ଘାଉଡ଼ ଚମଡ଼ାତଳୁ ନୂଆ ଚମ କଅଁଳିଲା । ସେ ଚମଡ଼ାର ରଙ୍ଗହେଲା ଠାକ ସୁନା ପରି !

ଜେମା ଭଲ ହୋଇଗଲା ପରେ ସେ ମଇଁଷିଟିର ଦେଖାମିଳିଲାନି । ଲୋକେ କହିଲେ, କୋଉ ଦେବତା ତାକୁ ପଠାଇ ଥିଲେ । ଜେମାଙ୍କୁ ଭଲ କରିବାକୁ ।

ଏଥର ଲୋକେ ବେଶ୍ ସୁଖରେ ରହିଲେ । ସେମାନଙ୍କ ଖିଆଲ ଲାଗି ସେ ମାଟିରେ ସୁନା ଫଳିଲା । ଲୋକେ ବଡ଼ିଆ ଘରଦ୍ୱାର କରି ଆରାମରେ ରହିଲେ । କ୍ରମେ ଜେମାଙ୍କ ଖାତିର୍ ବଢ଼ିଲା । ଦେଖୁଁ ଦେଖୁଁ ଗୋଟିଏ ଛୋଟିଆ ମୁଲକ ସେଠି ଗଢ଼ି ଉଠିଲା ।

ଏ ମୁଲକଟି ଥିଲା, ବୋନ ରାଜ୍ୟର ଗୋଟିଏ ଅଂଶ । ବୋନ ରାଜ୍ୟର ରାଜା ଜାଣିନ୍ତିନି ଯେ, ଅଗନାଅଗନା ବଣ ଭିତରେ ଏମିତି ଗୋଟିଏ ଛୋଟ ମୁଲକ ଗଢ଼ି ଉଠିଛି ।

ଥରେ ବୋନର ରଜାପୁଅ ପାରିଧିକୁ ଅସିଥିଲେ । ବର୍ଷା ବତାସି ମାଡ଼ି ଆସିଲା । ରଜାପୁଅ ତାଙ୍କ ଲୋକଙ୍କଠୁଁ ଅଲଗା ହୋଇଗଲେ । ସାଙ୍ଗରେ ଅଳ୍ପକେତେକ ଦେହଲଗା ଲୋକ । ସେଇମାନଙ୍କୁ ନେଇ ଯାଉ ଯାଉ ବାଟବଣା ହୋଇଗଲେ । ଆସି ପହଞ୍ଚିଲେ ଏଇଠି ।

ରାଜକୁମାରଙ୍କ ଲୋକ ଆସି ଜେମାଙ୍କୁ କହିଲା, ବୋନର ରାଜ 'କୁମାର ଅଚ୍ଛମଲ୍ଲ ବାଟବଣା ହୋଇ ଯାଇଚନ୍ତି । ପାଖରେ ଖାଇବାକୁ କିଛି ନାହିଁ । ଆପଣ ଟିକେ ସାହାଯ୍ୟ କରିବେ କି ?'

ରାଜକୁମାରୀ ସଙ୍ଗେ ସଙ୍ଗେ ତାଙ୍କର ଲୋକମାନଙ୍କୁ ଲଗାଇଦେଲେ ଅଳ୍ପ ସମୟ ମଧ୍ୟରେ ନାନାପ୍ରକାର ଖାଇବା ଜିନିଷ ତିଆରି ହୋଇଗଲା । କୁମାର ଅର୍ଜୁନମଲ୍ଲ ଆଶ୍ଚର୍ଯ୍ୟ ହୋଇଗଲେ । ଜଙ୍ଗଲ ଭିତରେ ଏ ପ୍ରକାର ସୁଆଦିଆ ରାଜକୀୟ ଖାଇବା ଜିନିଷ ! ସେ ପାଇବେ ବୋଲି ସ୍ୱପ୍ନରେ ବି ଭାବିପାରି ନ ଥିଲେ । ନାନାପ୍ରକାର ପ୍ରଶ୍ନ ତାଙ୍କ ମନରେ ଉଙ୍କି ମାରିଲା ।

ତା'ପରଦିନ ସକାଳୁ କୁମାର ବିଦାୟ ନେବାର କଥା । ଜେମା କୁମାରଙ୍କ ଦେହଲଗା ଚାକରକୁ ଡାକିଲେ । କହିଲେ, 'ଦେଖ, ଏଇ ପୁଡ଼ିଆଟି ତମ ରାଜକୁମାରଙ୍କୁ ଦିବ । ଏଥିରେ ମୁଠିଏ ଚାଉଳ ଅଛି । ଆମ ଏଇ ଅଞ୍ଚଳର ଧାନର ଚାଉଳ । ତମ ଅଞ୍ଚଳରେ ଏମିତି ଚାଉଳ ହେଉଛି କି ନାହିଁ ମୁଁ ଜାଣେନି । ହେଲେ, ରାଜକୁମାରଙ୍କୁ ଉପହାରଦେବା ଲାଗି ମୋ'ପାଖେ ସେମ୍‌ତି କିଛି ମଣି ମାଣିକ ନାହିଁ । ଆମେ ଜଙ୍ଗଲୀ, ପାହାଡ଼ୀ ଲୋକ । ଆମ ପାଖରେ ଯାହା ଅଛି; ତାହାଇ ତାଙ୍କୁ ଉପହାର ଦେଉଛୁ । ଫିଙ୍ଗି ଦେବନି !'

ଚାକରଟି ପୁଡ଼ିଆକ ଚାଉଳ ନେଇ ରାଜକୁମାରଙ୍କୁ ଦେଲା । ଆଉ ଜେମା ଯାହା କହିଥିଲେ, କହିଲା ।

ରାଜକୁମାରଙ୍କ ଆଶ୍ଚର୍ଯ୍ୟ ବହୁଗୁଣିତହେଲା । ଏ ଭାଷା ତ ସାଧାରଣ ଲୋକର ନୁହେଁ । ଏମ୍‌ତି ପୁଡ଼ିଆ ବାନ୍ଧିବା ସାଧାରଣ ନାରୀ ପକ୍ଷରେ ସମ୍ଭବ ନୁହେଁ ! ଏ କ'ଣ ରଜା ଘରର !

କୁମାର ଅର୍ଜୁନମଲ୍ଲ ଆଉ ଡେରି କଲେନି । ସେ ଏ ଝିଅଟି ବିଷୟରେ ଲୋକମାନଙ୍କୁ ପଚାରିଲେ । ସେ ଯେ ପ୍ରକୃତରେ ଜଣେ ରାଜଜେମା ଏ କଥା ପ୍ରମାଣ ହୋଇଗଲା ।

ଅର୍ଜୁନମଲ୍ଲ ଖବର ପଠାଇଲେ ଜେମାଙ୍କ ପାଖକୁ, ତାଙ୍କୁ ସାକ୍ଷାତ କଲେ । ଦେବୀପ୍ରତିମା ପରି ରୂପ ! ଅର୍ଜୁନମଲ୍ଲ ମୋହିତ ହୋଇଗଲେ । ଜେମାଙ୍କ ସହିତ ତାଙ୍କର ବିବାହ ହେଲା । ଦୁଇ ରାଜ୍ୟ ଏକ ହେଲା । ଏବକୁ ଏ ଅଞ୍ଚଳର ନାଁ ହୋଇଛି ଓ୍ୱାଜୋ । ଓ୍ୱାଜୋର ସଦର ମହକୁମା ହେଉଛି ଫେଂକେଂ । ଏବେ ସୁଦ୍ଧା ଏ ଅଞ୍ଚଳରେ ଲୋକେ ଧଳା ମଇଁଷିକି ପବିତ୍ର ବୋଲି ମାନନ୍ତି । ତା ମାଂସ ଖାଆନ୍ତିନି । ସେମାନେ କହନ୍ତି ଯିଏ ସେ ମଇଁଷିକି ମାରିବ କି ଖାଇବ ତା'କୁ ସେଇ ବିଚିତ୍ର ରୋଗ ହେବ ।

●

# ଲୋରୋ ଜଂଗରାଂ

ବେଶ୍ ବହୁତ ବହୁତ ଦିନ ତଳେ ପ୍ରାଂବାନନରେ ଜଣେ ବଳୁଆ ରାଜା ଥିଲେ । ସେ ଖୁବ୍ ନିର୍ଦ୍ଦୟ ଥିଲେ ! ତାଙ୍କ ପ୍ରତାପରେ ସମସ୍ତେ ଥରହର ହେଉଥିଲେ । ଏ ରାଜାଙ୍କ ନାଁ ଥିଲା ବକ ରାଜା ।

ବକରାଜାଙ୍କ ବିରୁଦ୍ଧରେ ବହୁତ ରାଜା ଲଢ଼ିଥିଲେ । କେହି ତାଙ୍କୁ ଜିଣିପାରି ନ ଥିଲେ । ମାତ୍ର ତାଙ୍କୁ ଜିଣିଲେ ରାଜା ପେଙ୍ଗିଙ୍ଗ୍ । ଏଇ ରଜାଙ୍କର ଜଣେ ବୀରପୁରୁଷ ଥିଲେ । ନାଁ ଥିଲା ବନ୍ଧୟଶ । ବନ୍ଧୟଶ ବୀର ପରି ବୀର ଜଣେ । ସେ ଅନେକ ତପସ୍ୟା କରି ଗୋଟିଏ ତଲୁଆର ପାଇଥିଲେ । ଏ ତଲୁଆର ନାଁ ଥିଲା ବାନ୍ଦୁଂ । କୁହୁକ ତଲୁଆର । ତା'ଆଗରେ ଶତ୍ରୁସେନା ଠିଆହୋଇ ପାରୁନଥିଲେ । ଆଖିପିଛୁଳାକେ ହଜାର ହଜାର ପାଇକକୁ ସଫା କରିଦେଉଥିଲେ ବନ୍ଧୟଶ । ଲୋକମୁଖରେ ତାଙ୍କର ନାଁ ହୋଇଥିଲା ବାନ୍ଦୁଂ ବନ୍ଧୟଶ ।

ବକରାଜା ହାରିଲେ···ହାରିଲେ ବାନ୍ଦୁଂ ବନ୍ଧୟଶଙ୍କ ଯୋଗୁଁ । ହାରିଲେ ନୁହେଁ···ହାରି ଖାଇଲେ । ପ୍ରାଂବାନନ ରାଜ୍ୟ ପେଙ୍ଗିଙ୍ଗ୍‌ଙ୍କ ଅଧୀନକୁ ଆସିଗଲା ।

ଏବେ ପେଙ୍ଗିଙ୍ଗ୍ ବନ୍ଧୟଶଙ୍କ ଉପରେ ଖୁବ୍ ଖୁସି । ସେ ଯାହା କହିଲେ, ତାହା ହେବ । ରାଜା ତାଙ୍କ କଥାନୁସାରେ ଚଳନ୍ତି । ବନ୍ଧୟଶ କହିଲେ, ସେ ପ୍ରାଂବାନନ୍‌ରେ ରହିବେ । ସେୟା ହେଲା ।

ବନ୍ଧୟଶ ଏଠି ବେଶ୍ ଖୁସିରେ ଥାଆନ୍ତି । ବକରାଜାଙ୍କ ନାତୁଣୀ ଲୋରୋ ଜଂଗରାଂ ଖୁବ୍ ସୁନ୍ଦରୀ । ବନ୍ଧୟଶ ଏ କଥା ଆଗରୁ ଶୁଣିଥିଲେ । ପ୍ରାଂବାନନ୍‌ରେ ରହିବାର ଏହାହିଁ ଥିଲା କାରଣ ।

ବନ୍ଧୟଶ ଲୋରୋ ଜଂଗରାଂଙ୍କୁ ଥରେ ଦେଖିଥିଲେ । ତା'ପରେ ତାଙ୍କୁ କେମିତି ପାଇବେ, ଏଇ ଚିନ୍ତା ତାଙ୍କୁ ଘାରିଲା । କିନ୍ତୁ ଜଗରାଂ ତ ଦୂର ଆକାଶର ଫୁଲ । ତାଙ୍କୁ ହାତରେ ପାଇବା ଏତେ ସହଜ ନ ଥିଲା । ବକରାଜାଙ୍କ ଲୋକମାନେ ତାଙ୍କୁ ଜଗି ରହିଥିଲେ ।

ବାନ୍ଦୁଂ ବନ୍ଧଯଶ ସିଧା ସିଧା ରାଜା ବକଙ୍କ ମନ୍ତ୍ରୀଙ୍କ ଭେଟିଲେ । ରଜାଙ୍କ ମୃତ୍ୟୁପରେ ଯେ ବୁଝୁଥିଲେ ରାଜମଣ୍ଡଳର କଥା । ସେ କହିଲେ, 'ମୋ'ର ଗୋଟିଏ ପ୍ରସ୍ତାବ ଅଛି !'

'କହନ୍ତୁ ବୀର ବାନ୍ଦୁଂ ବନ୍ଧଯଶ !'

'ମୁଁ ରାଜକୁମାରୀ ଲେଙ୍ଗେ ଜଙ୍ଗରାଂଙ୍କ କଥା ଶୁଣିଚ । ଆଉ ଶୁଣିଚ ଏ ଯାଏ ସେ ବାହାହେଇ ନାହାନ୍ତି !'

'ସତ କଥା !'

'ରାଜକୁମାରୀଙ୍କ ବିବାହ ହେବାକୁ ମୋ'ର ଇଚ୍ଛା !'

'କିଂନ୍ତୁ ବୀର !'

'ମୁଁ ବୀର ଆପଣ ଜାଣନ୍ତେ । ଧନ, ଦଉଲତର ଅଭାବ ନାହିଁ । ଆଉ...'

'ହଉ, ଆଉ କିଛି କହନ୍ତୁନା । ଆମେ ଏ କଥା ଉପରେ ବିଚାର କରିବୁ । ଆପଣଙ୍କୁ ଜଣାଇବୁ !'

ବାନ୍ଦୁଂ ବନ୍ଧଯଶ ମେଲାଣି ନେଲେ । ତାଙ୍କ ମନରେ ରାଜକୁମାରୀଙ୍କ କଥା ବେଶ୍ ଆସନ ଜମାଇ ନେଲା !

ମନ୍ତ୍ରୀ ଭେଟକଲେ ଲେଙ୍ଗେ ଜଙ୍ଗରାଂଙ୍କୁ । ଦୁହିଁଙ୍କ ଭିତରେ ବିଭିନ୍ନ ଦିଗରୁ କଥାଟିର ଆଲୋଚନା କରାଗଲା । ବାନ୍ଦୁଂ ବନ୍ଧଯଶଙ୍କ ନାଁ ଚାରି-ଆଡ଼େ ଜଣାଶୁଣା । ସେ ଯେପରି ସୁନ୍ଦର, ସେପରି ବୀର । ଲୋକମାନେ ତାଙ୍କୁ ଖୁବ୍ ଶ୍ରଦ୍ଧା କରନ୍ତି । କୌଣସି ରଜାପୁଅ ତାଙ୍କର ସମସରି ହେବେନି । କିନ୍ତୁ ସେ ଯେ ରାଜା ବକଙ୍କୁ ମାରିଚନ୍ତି । ସେ ବକରାଜକୁଳର ଜୀବନ ବଇରି । ଜେମା ଦେଖିଚନ୍ତି ଅନେକଥର ଏଇ ବୀରଙ୍କୁ । ଲଢ଼େଇ ହୋଇ ନ ଥିଲେ ହୁଏତ ସେ ଖୁସିରେ ବରଣମାଳା ଗଳାଇ ଦେଇଥା'ନ୍ତେ ଏ ବୀରଙ୍କ ଗଳାରେ । କିନ୍ତୁ ତାଙ୍କ ଜେଜେଙ୍କୁ ମାରିଚନ୍ତି ବାନ୍ଦୁଂ ବନ୍ଧଯଶ । ସେ ଯେ ହୁଅନ୍ତୁ ନା କିଆଁ ଲେଙ୍ଗେ ଜଙ୍ଗରାଂ ତାଙ୍କୁ ବିବାହ କରି ପାରିବେନି ।

'ମାତ୍ର ରାଜକୁମାରୀ, ଏହାର ଫଳାଫଳ ଭାବିଚନ୍ତି ତ !' ମନ୍ତ୍ରୀଙ୍କ ସ୍ୱର ଶୀତେଇ ଉଠୁଥାଏ···ଭବିଷ୍ୟତ କଥା କଳ୍ପନା କର । ବାନ୍ଦୁଂ ବନ୍ଦଯଶ ରାଗିଲେ ଆଉ ରକ୍ଷାରକ୍ଷଣ ନାହିଁ । ରାଜ ପରିବାରର ଯୋଉ କେତେଜଣ ବର୍ତ୍ତି ଯାଇଚନ୍ତି, ଏମାନଙ୍କର ଯୋଉ ଜ୍ଞାତିବନ୍ଧୁ ଅଛନ୍ତି; ସମସ୍ତେ ସଫା ହେଇଯିବେ ।

ରାଜକୁମାରୀ ଏକଥା ଜାଣନ୍ତି । ତାଙ୍କ ସୁନ୍ଦର ମୁହଁ ଉପରେ ଭୟର ଗୋଟାଏ ଛାଇ ଖସିଗଲା । ତା'ପରେ ସେ କହିଲେ, 'ମନ୍ତ୍ରୀ, ମୁଁ ଜାଣେ ଆମେ ସବୁ ଶେଷ ହେଇଯିବା । ହେଲେ, ନେଜେକେଙ୍କର ଖୁନୀର ହାତ ମୁଁ ଧରିବି ନାହିଁ । ଯା' ହେବାର ହେଉ !'

ମନ୍ତ୍ରୀ କହିଲେ, 'ଏ କ'ଣ ଆପଣଙ୍କର ଶେଷକଥା !'

'ହଁ ! ଶେଷକଥା ଏବଂ ଗୋଟିଏ କଥା ମଧ୍ୟ । ଏହାଛଡ଼ା ମୋ'ର ଆଉ କୌଣସି କଥା ନାହିଁ । ତେବେ, ଗୋଟାଏ ସର୍ତ୍ତ ରଖାଯାଇପାରେ !'

'ସର୍ତ୍ତ !'

'ହଁ ମନ୍ତ୍ରୀ, ଗୋଟାଏ ଅସମ୍ଭବ କଥା କରିବାକୁ କହିଲେ, ବନ୍ଦଯଶ କରି ପାରିବେନି, ଆଉ ମୋର ବିବାହ କଥା ଉଠିବନି ।'

'ବେଶ୍ ସେମିତି ଗୋଟାଏ କିଛି କରାଯାଉ । ମୁଁ ଭାବୁଚି ରାତିକ ଭିତରେ ସେ ଆମପାଇଁ ହଜାରେ ମନ୍ଦିର ତିଆରି କରିଦେବା କଥା କହିବା । ତା'ସହ ଦୁଇଟା ବଡ଼ କୂଅ ଖୋଳିବାର କଥା ବି ରହିବ ।'

'ଠିକ୍ କହିଲେ ମନ୍ତ୍ରୀ ! ବାନ୍ଦୁଂ ବନ୍ଦଯଶ ରାତାରାତି ଏତକ କରି ପାରିବେନି ନିଶ୍ଚୟ । କେହି ତ କରିପାରିବେନି । ସିଏ କେମିତି ପାରନ୍ତେ !' ରାଜକୁମାରୀ ମୁହଁରେ ଆନନ୍ଦ ଝଲସି ଉଠିଲା ।

ମନ୍ତ୍ରୀ ଏକଥା କହିଲେ ବାନ୍ଦୁଂ ବନ୍ଦଯଶଙ୍କୁ । ମାତ୍ର ତାଙ୍କ ମନରେ ଟିକେହେଲେ ଏହାର ପ୍ରଭାବ ପଡ଼ିଲାନି । ବରଂ ସେ ଖୁବ୍ ଖୁସିହେଲେ । ସେ ପଚାରିଲେ, ଏତିକି ତ ମନ୍ତ୍ରୀ ମହାଶୟ ! ନା' ଏହାଠାରୁ ଆହୁରି କିଛି···?' ଯେତେ ଯେମିତି ଏ କାମ ତାଙ୍କ ପାଇଁ କିଛି ନୁହେଁ ।

ମନ୍ତ୍ରୀ ଆଶ୍ଚର୍ଯ୍ୟ ହେଲେ । ବାଇଦ୍ଧୁଂ ବନ୍ଧଯଣ କ'ଣ କହୁଚନ୍ତି ! ସେ ଆଉ ଥଣ୍ଟା କରୁନାହାନ୍ତି ତ ! କଏଜାଣେରେ ବାବା ! ସେ ଗଳାକୁ ନରମ କରି କହିଲେ, 'ହଁ, ଏକ୍ତକ ।'

'ଲୋବ୍ରେ ଜଂଗଗ୍ବାଂ ରାଜାହେଲେ ! ମୁଁ ଏତକ କରିଦେଲେ ସେ ବିବାହ କରିବେ ତ ମୋତେ ! ତାଙ୍କ ପାଇଁ ମୁଁ ଅନେକ କଷ୍ଟ କରି-ପାରେ ।' ବାଇଦ୍ଧୁଂ ବନ୍ଧଯଣଙ୍କ ଗଳାରେ ଆଶାର କୁହାଟ ଝାଉ ହୋଇ ଯାଉଥିଲା ! ମନ୍ତ୍ରୀ ଆହୁରି ଆଶ୍ଚର୍ଯ୍ୟ ହେଲେ ! ଭାବିଲେ, ତା'ହେଲେ ଜେମା ଜଂଗଗ୍ବାଂ ଯାହା ଭାବୁଚନ୍ତି, ନା' ହୋଇ ପାରିବନି ! ବନ୍ଧଯଣ ଏ ଅସମ୍ଭବ କାମକୁ ସମ୍ଭବ କରି ଦେବେ ! ସେ ନିଶ୍ଚୟ ଜେମାଙ୍କୁ ବାହାହେବେ ।

ବନ୍ଧଯଣଙ୍କୁ ଖବର ଦେଇ ସେ ଦଉଡ଼ିଲେ ଲୋବ୍ରେ ଜଂଗଗ୍ବାଂ ପାଖକୁ । ତାଙ୍କୁ ଜଣାଇଲେ ମନର ସନ୍ଦେହ ।

ଜେମାଙ୍କ ମନରେ ସନ୍ଦେହ ଆସିଲା ! ଏ ବନ୍ଧଯଣ କ'ଣ ଦେବତା ଏମିତି ଅଦ୍ଭୁତ, ଅସମ୍ଭବ ପଣକୁ ଦେଖି ବି ଡରି ଯାଉନାହାନ୍ତି । ସେ ମନ୍ତ୍ରୀଙ୍କି କହିଲେ, 'ଆପଣ ନଜର ରଖନ୍ତୁ । ଲୋକ ଜଗାଇ ଆଖି ଦିଅନ୍ତୁ ।'

ସେଇ ଅନୁସାରେ ଲୋକେ ଜଗିରହିଲେ । ଲୋକ ଆସି ଜେମାଙ୍କୁ କହିଲେ,

'ଶୁଣ ଶୁଣ ଜେମାମଣି,
ଅଗଣିତ ଭୂତ ସାରିରଜନୀ
କାମକରୁଚନ୍ତି ଜାଣି ।
କେତେ ବେଗେ ହୁଏ କାମ,
ନାଅନ୍ତିନା କେହି ଟିକେ ବିଶ୍ରାମ
ପୂରିଯିବ ତାଙ୍କ ପଣ !'



ରଜାଝିଅ ଜାଣିଲେ, ବାନ୍ଦୁଂ ବନ୍ଦୋୱସଙ୍କ ପାଇଁ ଭୂତପ୍ରେତ-ମାନେ କାମ କରୁଛନ୍ତି । ତାଙ୍କର ବାବା ଜଣେ ବଡ଼ ଗୁଣିଆ । ସେମାନଙ୍କ ସାହାଯ୍ୟରେ ସେ ଏ ଅସମ୍ଭବ କାମକୁ କରି ପକାଉଛନ୍ତି । ଦେଖୁଦେଖୁ ବରାଠ କୂଅ ଦୁଇଟା ଖୋଳା ହୋଇଗଲାଣି । ନଅ ଶହ ନବେଟି ମନ୍ଦିର ତିଆରି ସରିଲାଣି । ଆଉ ଦଶଗୋଟି ମନ୍ଦିର ସରିଲେ ତାଂକର ପଣ ପୂରଣ ହେବ । ରାତି ପାହିନି । ଆହୁରି ରାତି ଅଛି । ପାହାନ୍ତାପହର ହୋଇନି ।

ଲୋରୋ ଜଙ୍ଗରାଂ ଘାବେଣିରେ ପଡ଼ିଗଲେ । ସେ ତାଙ୍କର ସବୁ ଗୃହକର୍ତ୍ତ୍ରୀଙ୍କି ନିଦରୁ ଉଠାଇଦେଲେ । କହିଲେ, 'ବେଗିଯାଅ...ଢେଙ୍କିରେ ଧାନ କୁଟ । ଧାନ ସହିତ ବିଭିନ୍ନ ସୁଗନ୍ଧ ଜିନିଷ ମିଶାଇ କୁଟ ।'

ସେମାନେ ସେମିତି କଲେ । ସମସ୍ତେ ଭାବିଲେ, ରାତି ଶେଷ ହୋଇଗଲା । ବାସନାର ଜିନିଷଗୁଡ଼ିକ କୁଟିବାରୁ ସେ ମହକ ଚାରିଆଡ଼କୁ ଖେଳିଗଲା । ଭୂତପ୍ରେତମାନେ ଏ ସୁଗନ୍ଧ ପାଇ ପଳାଇଗଲେ । ସେମାନେ

ସୁଗନ୍ଧ ଛଡ଼ୁ ଥାଉଥିଲା । ନଅଶହ ଅନେକଗୁଡିଏ ମନ୍ଦିର ଥିଲା । ଆଜି ଗୋଟିଏ ବାକି ଅଛି । କାମ ସରିଲା । ସମସ୍ତେ ଚାଲିଗଲେଣି ।

ବାଦଲୁଂ ବଜୟଗ ବ ଉଠି ପଡ଼ିଲେ । ସେ ଆସି ଦେଖିଲେ ଏସବୁ । ତାଙ୍କମନରେ ଖୁବ୍ ରାଗ ଆସିଲା । ସେ ଲେବେ ଜଂଗବାଙ୍କ ଚାଲାକ ବୁଝିପାରି ଅଭିଶାପ ଦେଲେ । ସେ କହିଲେ, 'ବୁଢ଼ୀ ବୁଢ଼ୀ ନ ହେବା ଯାଏ ପ୍ରାଂବାନନ୍‌ର ଝିଅମାନେ ବାହାହୋଇ ପାରିବେ ନାହିଁ । ଲେବେ ଜଂଗବାଂ ପଥର ହୋଇଯିବେ !' ଏବେ ମଧ୍ୟ ଏ ମୂର୍ତ୍ତି ପ୍ରାଂବାନନ୍‌ରେ ଅଛି ।



# ଇନ୍ଦ୍ରକୀଳର ତପୀ

ଗୃହପାଖରେ ଇନ୍ଦ୍ରକୀଳ ପର୍ବତ ମେଲାଇ ଦେଇଛି ତା'ର ନୀଳରୂପ । ଘନ ଜଙ୍ଗଲ । ଲତାଗୁଳ୍ମ ମଧ୍ୟରେ ବଡ଼ ବିଚିତ୍ର ରୂପ ଇନ୍ଦ୍ର-କୀଳର । ଯେତିକି ଭୟଙ୍କର ସେତିକି ସୁନ୍ଦର ।

ଇନ୍ଦ୍ରକୀଳର ଗୋଟାଏ ଅଜ୍ଞାତ ଗୁହାରେ ତପସ୍ୟା ସାଧୁଚନ୍ତି ଜଣେ ଅଳ୍ପ ବୟସର ଯୁବକ । ଖୁବ୍ ତେଜସ୍ୱୀନ୍ । ଲମ୍ବ ଲମ୍ବ ବାହୁ ଜାନୁଯାଏ ପାଏ । ସେ ଜଣେ ରାଜକୁମାର ।

ତାଙ୍କ ନାଁ ଅର୍ଜୁନ···ରାଜକୁମାର ଅର୍ଜୁନ । ଅର୍ଜୁନ ତପସ୍ୟା କରୁଚନ୍ତି । ତାଙ୍କୁ ଦେଖୁଚନ୍ତି···ଲକ୍ଷ୍ୟ କରୁଚନ୍ତି ଦେବତାମାନେ । ଇନ୍ଦ୍ରକୀଳ ଦେବସ୍ଥାନ । ଏଇଠି ରହନ୍ତି ଦେବତାମାନେ । ସେମାନେ ଅର୍ଜୁନଙ୍କୁ ସୁଖ ପାଆନ୍ତି । ଅର୍ଜୁନ ମାନବ । ବୀରପୁରୁଷ । ହୁଏତ ସେ ଦେବତାମାନଙ୍କ କାମରେ ଆସିପାରନ୍ତି ।

ଦେବତାମାନଙ୍କୁ ହଇରାଣ କରୁଚି ଗୋଟାଏ ଅସୁର । ନାଁ ତା'ର ନିବାତ କବଚ । ଏଇ ଅସୁରକୁ ମାରିବା ପାଇଁ ସେମାନେ ଜଣେ ବୀର-ପୁରୁଷ ଖୋଜୁଚନ୍ତି । ଅର୍ଜୁନ ସେଇ ବୀର କି !

ଦେବାତାମାନେ ଅର୍ଜୁନଙ୍କୁ ପରଖି ଦେଖିବାକୁ ଚାହାନ୍ତି । ସେମାନେ ସାତଜଣ ଅପସରାଙ୍କୁ ପଠାଇଲେ । ସେମାନଙ୍କର ରୂପରେ ଅନ୍ଧାର ଦୂର ହୋଇଯାଉଚି । ସୁପ୍ରଭା ହେଉଚନ୍ତି ଏଇ ଅପସରାମାନଙ୍କ ମଧ୍ୟରେ ସବୁଠୁ ଅଧିକ ସୁନ୍ଦରୀ ।

ସାତଜଣ ଅପସରା ଆସିଲେ ଅର୍ଜୁନଙ୍କ ପାଖକୁ ! ଯୋଉ ଗୁହାରେ ସେ ତପସ୍ୟା କରୁଚନ୍ତି, ସେଇଠୁ ଅଳ୍ପ ଦୂରରେ ଅଛି ଗୋଟିଏ

ପଦ୍ମପୋଖରୀ । ଆଉ ତା'ର କୁଆଆଖିପରି ନିର୍ମଳ ଜଳରେ ଆକାଶ ଫୁଟିଦିଏ । ଫୁଟିଦିଏ ଇନ୍ଦ୍ରକୀଳର ରୂପ, ଗଛଲତା, ଫୁଲ, ଫଳ ।

ଅପସରାମାନେ ସେଇ ପୋଖରୀ ପାଖରେ ପହଞ୍ଚିଲେ । ତା'କୂଳରେ ବସିଲେ ସାତ ଅପସରା । ପାଦ ତଳକୁକରି ସେମାନେ ପାଣିରେ ନିଜନିଜର ମୁହଁକୁ ଦେଖୁଥିଲେ ବେଳେବେଳେ ଅଙ୍ଗୁଳିରେ ଛୁଇଁଦେଉଥିଲେ ପାଣିକି । ପାଣି ଚହଲି ଯାଉଥିଲା । ହଜାରହଜାର ଠିକି ଲହରୀରେ ଅପସରାଙ୍କ ମୁହଁ ହଜାର ହଜାର ହୋଇ ଦିଶୁଥିଲା ।

ସାତ ଅପ୍‌ସରା ହସୁଥିଲେ, ଗପୁଥିଲେ ଆଉ ମନଖୁସିରେ ଗୀତଗାଉଥିଲେ । ଅଳ୍ପଦୂରରେ ଥାଇ ଗୁହାରେ ତପସ୍ୟା କରୁଥିଲେ ଅର୍ଜୁନ । ସିଏ ଏମାନଙ୍କୁ ଦେଖୁଥିଲେ । ଏମାନଙ୍କ କଥା ଶୁଣୁଥିଲେ । ଶୁଣୁଥିଲେ ଏମାନଙ୍କ ଗୀତ । ଆମୋଦିତ ହେଉଥିଲେ ଅର୍ଜୁନ ।

ଅପସରାମାନେ ଗୁହାକୁ ଆସିଲେ । ସେଇପାଖରେ ସେମାନେ ନାଚିଲେ । ସେମାନଙ୍କ ମଧୁରଗୀତରେ ଗଛଲତାରେ ଫୁଲ ଫୁଟିଲା । ସେମାନଙ୍କ ନାଚରେ ପଦ୍ମ ବିକଶିଲା । ଅନେକ ଦିନ ଯାଏ ସେମାନେ ଗୁହାର ପାଖରେ ଏମିତି ନାଚ, ଗୀତ, ଖେଳ କୌତୁକ କଲେ । ଇଚ୍ଛାଥାଏ, ଅର୍ଜୁନଂକ ତପସ୍ୟା ଭାଙ୍ଗିବା ।

ଅର୍ଜୁନ ଯୋଉଁ ଅଟଳକୁ ସେଇ ଅଟଳ । ଅପସରାମାନଙ୍କ ଗୀତ ନାଚ, ତାଙ୍କ ମନରେ ଆନନ୍ଦ ଆଣିଚି । ହେଲେ, ତାଂକ ତପସ୍ୟା ଲାଗିରହିଚି । କେବଳ ସୁଭଦ୍ରାଂକ ପ୍ରତି ଟିକେ ଟଳିଚି ମନ । ତେବେ ବି ତପ ଭାଙ୍ଗିଯାଇନି ।

ଅପସରାମାନେ ଫେରିଗଲେ ଇନ୍ଦ୍ରଙ୍କ ପାଖକୁ । ଇନ୍ଦ୍ର ଦେବତା-ମାନଂକ ରାଜା । ତାଙ୍କୁ ଜଣାଇଲେ, 'ଦେବରାଜ, ଆମ୍ଭମାନଙ୍କର ସବୁ ଚେଷ୍ଟା ଫସରଫାଟିଗଲା । ଅର୍ଜୁନ ସେମିତି ତପସ୍ୟା ଚାଲୁ ରଖିଛନ୍ତି ।'

ଇନ୍ଦ୍ର ଭାବିଲେ ସିଏ ନିଜେ ପରୀକ୍ଷା କରିବେ । ସେ ବୁଢ଼ା ବ୍ରାହ୍ମଣ ବେଶ ଧରିଲେ । ଚାଲିଲେ ଅର୍ଜୁନଂକ ଗୁହା ପାଖକୁ । ଗୁହା ମୁହଁରେ ଥାଇ ସିଏ ବେଦ ଗାଇଲେ ।

ସେ କହିଲେ, 'ମୁଁ ଜାଣେ ତମେ ରାଜକୁମାର । ତପସ୍ୟା କରୁଚ ଯେ, ପାଖରେ ଏ ଧନୁ, ଶର, ତଲୁଆର ରଖିଚ କାହିଁ ? ତା'ହେଲେ, ତପର ତପସ୍ୟା ଯେ ପୂରଣ ହେବନ ।'

ଅର୍ଜୁନ କହିଲେ, 'ବ୍ରାହ୍ମଣ, ମୁଁ କ୍ଷତ୍ରିୟ । ଆମେ ଲଢ଼େଇ କରୁ ଲଢ଼ିବା ଆମ ରକ୍ତର ଗୁଣ । ମୁଁ ତପସ୍ୟା କରୁଚ ଅଧିକ ବଳୁଆ ହେବାକୁ; ହେବାକୁ ଅଧିକ ବୀର ।'

ତପସ୍ୟା ତମର ପୂର୍ଣ୍ଣ ହେଉ' ବ୍ରାହ୍ମଣ କହିଲେ ! ସେ ବିଦାୟ ନେଲେ । ଇନ୍ଦ୍ର ଜାଣିଲେ ଅର୍ଜୁନ ସ୍ୱର୍ଗ ଚାହାନ୍ତିନ; ଅର୍ଜୁନ ଧନ ରତ୍ନ ଲୋଡ଼ନ୍ତିନ । ଅର୍ଜୁନ ଆକାଂକ୍ଷା କରନ୍ତିନ ମୋକ୍ଷ ! ସେ ବୀର । ତେଣୁ ସେ ଚାହାନ୍ତି ଅଧିକ ବୀର ହେବାକୁ । ସେ ଖୁସି ହେଲେ । ତା' ହେଲେ, ଏମିତି ବୀର ଦ୍ୱାରା ନିବାତକବଚ ମରିପାରିବେ ।

ସେ ଫେରିଗଲେ ସ୍ୱର୍ଗକୁ । ପଠାଇଲେ ବାତଙ୍କୁ । ସେ ବାତବିତ୍ରୁ । ବାତ ଆସିଲେ ଗୁହାପାଖକୁ । ସେ ଶବର ରୂପ ନେଇଚନ୍ତି ।

ନିବାତକବଚର ଅନେକ ଚର । ଗୋଟାଏ ଚର ଅର୍ଜୁନଙ୍କୁ ଦେଖିପାରିଲା । ସେ ସନ୍ଦେହକଲା ଅର୍ଜୁନଙ୍କୁ । କାହିଁକି ଏ ରାଜକୁମାର ଏଠି ତପକରୁଚି ! ଏହାକୁ ମାରିବାକୁ ହେବ । ଅସୁରଚର ବାର୍‌ହା ହେଇ ଗୁମ୍ଫା ସେପାଖେ ଗର୍ଜନ କଲା । ଆଉ ଏତେ ଏତେ ଦାନ୍ତରେ ମାଟି ତାଡ଼ିଲା ।

ଅର୍ଜୁନ ବିଶ୍ରାମ ନେଇଥିଲେ । ବାର୍‌ହା ହେଣ୍ଟାଳ ଶୁଣୁଛି । ସେ ଧନୁଶର ନେଇ ବାହାରି ଆସିଲେ । ବାର୍‌ହା ତାଙ୍କ ଆଡ଼କୁ ଧାଇଁ ଆସିଲା । ତାଙ୍କୁ ଚଢ଼ାଉକଲା ।

ଅର୍ଜୁନ ଧନୁରେ ଶର ଯୋଡ଼ିଦେଲେ । ବିଜୁଳିପରି ସେ ଶର ଭେଦିଲା । ବାର୍‌ହା ଗର୍ଜନ ତୋଳି ଢଳିପଡ଼ିଲା ।

ଅର୍ଜୁନ ଧାଇଁଗଲେ ସେ ପଶୁଟାର ପାଖକୁ । ଆଉ ଠିକ୍ ସେଇ ମୁହୂର୍ତ୍ତରେ ଆଉ ଜଣେ ଶବର ସେଠି ଉପସ୍ଥିତ ।

'ମୁଁ ମାରିଚି ଜନ୍ତୁଟାକୁ !' ଅର୍ଜୁନ କହିଲେ ।

'ନା···ନା···! ମୁ ମାରିଚି !' ଶବର କହିଲା ।

'ଦେଖି ତୁମ ଶର !'

ଦେଖିବା ଚାଲ !!'



ସତେ ଆଶ୍ଚର୍ଯ୍ୟ ହେଲେ । ଦୁଇଟି ଶର ଗୋଟିଏ ଜାଗାରେ ବାଜିଚି !

ତା'ହେଲେ, ତା' ଶରରେ ମରିଚି ଏ ବାର୍‌ହା !

ଅର୍ଜୁନ କହିଲେ, 'ସାମାନ୍ୟ ଶବର ହୋଇ, ମୋ' ସଙ୍ଗେ କଳି କରୁଚ !'

'ମଣିଷ ସାମାନ୍ୟ ନୁହେଁ···ରାଜକୁମାର । ତା'କାମ ତାକୁ ବଡ଼ ସାନ କରଏ । ପରୀକ୍ଷା କରନା !'

'ପରୀକ୍ଷା ! ମାନେ ?'

'ଏଇ ଅସ୍ତ୍ର ପରୀକ୍ଷା !'

'ବେଶ୍ ! ଧରିଲ ଧନୁ ! ତିଆରି ହୁଅ ।'

ଅର୍ଜୁନ ଶହଶହ ଶର ପଠାଇଲେ । ଶବର ପ୍ରତିଶର କଲା । ଅର୍ଜୁନଙ୍କର କୌଣସି ଶର କାମ କଲାନି । ସେ ରାଗି ଉଠିଲେ । ଧନୁ ଫିଙ୍ଗିଦେଲେ ଆଉ ମାଲଯୁଦ୍ଧ କରିବାକୁ ଦଉଡ଼ିଗଲେ ।

ଆରେ, ସେ ଯେ ଶବରକୁ ଧରିପାରୁ ନାହାନ୍ତି । ଶବର କ'ଣ ଅଶରୀର ! ସେ କ'ଣ ଛାଇ !

ଅର୍ଜୁନ ବୁଝିପାରିଲେ । ଶବର ସାମାନ୍ୟ ଲୋକ ନୁହେଁ । ସେ ନିଶ୍ଚୟ ଜଣେ ଦେବତା !

ଅର୍ଜୁନ ସଙ୍ଗେ ସଙ୍ଗେ ତାଙ୍କୁ ପ୍ରଣାମ କଲେ, କହିଲେ,
'ନ ଜାଣି କରିଚି ଅପରାଧ ପ୍ରଭୁ'
କ୍ଷମାକର, କ୍ଷମାକର;
ଚରଣରେ ତବ ପ୍ରଣାମ ଅରପେ
ଗ୍ରହଣ କର, ଗ୍ରହଣ କର !!'

ଅର୍ଜୁନଙ୍କ ଆଗରେ ବାତ ଦେବ ଦେଖାଦେଲେ । ସେ କହିଲେ 'ଚିନ୍ତାକରନି ଅର୍ଜୁନ । ମୁଁ ଆସିଥିଲି ତମକୁ ପରୀକ୍ଷା କରିବାକୁ । ମୁଁ ପବନ ଦେବତା । ଆସ ଯିବା ସ୍ୱର୍ଗକୁ । ଇନ୍ଦ୍ର ତମକୁ ଅପେକ୍ଷା କରିଚନ୍ତି । ତମେ ଦେବତାମାନଂକ ଗୋଟାଏ କାମ କରିବ ।'

'ଯଥା ଆଜ୍ଞା ପ୍ରଭୁ !' ଅର୍ଜୁନ ବାତଦେବଂକ ଅଦେଶ ମାନିଲେ ।
ଦୁହେଁ ଗଲେ ସ୍ୱର୍ଗକୁ ।
ଇନ୍ଦ୍ର ଅର୍ଜୁନଙ୍କୁ ସ୍ୱାଗତ ଜଣାଇଲେ ।

ଇନ୍ଦ୍ର କହିଲେ, 'ତମେ ନିବାତକବଚ କଥା ଜାଣ । ଦେବତା-ମାନଂକ ଏଇ ନିଷ୍ଠୁର ଶତ୍ରୁକୁ ନିପାତ କରିବାକୁ ହେବ । ଆଉ ଏ କାମ ତମେଇ କରିବ !'

'ଆଜ୍ଞା !'

'ଆଉ ତମ ସହିତ ରହିବ ସୁପ୍ରଭା !'

ଅର୍ଜୁନ ବେଶ୍ ଖୁସି ହେଲେ । ସୁପ୍ରଭାଙ୍କୁ ନେଇ ସେ ଦେବ-ଯାନରେ ଉଡ଼ିଗଲେ ନିବାତ କବଚର ରାଜ୍ୟକୁ । ଅସୁର ରାଜା ସେ ।

ତା' ରାଜ୍ୟଟାରେ ଅନେକ ଭଙ୍ଗା ଦେଉଳ । ମନ୍ଦିରଗୁଡ଼ାକ ଭାଙ୍ଗି ଦେଇଥାଏ ନିବାତକବଚ । ଅବଶ୍ୟ ଗୋଟାଏ ଚମତ୍କାର ପ୍ରାସାଦରେ ରହୁଥାଏ । ବଡ଼ ବିଳାସ, ବଡ଼ ଆଡ଼ମ୍ବରରେ ଥାଏ । ତା' ପାଦସେବା କରୁଥାଆନ୍ତି ଅନେକ ସ୍ୱର୍ଗ ଅପସରା । ତା' କାମ କରିବାକୁ ସିଏ ସ୍ୱର୍ଗରୁ ଏଇମାନଙ୍କୁ ଟାଣି ଆଣିଥାଏ ତା' ରାଜମହଲକୁ ।

ଅର୍ଜୁନ ଓ ସୁପ୍ରଭା ଗୋଟାଏ କୌଶଳ କଲେ । ଅର୍ଜୁନ ଲୁଚି ରହିଲେ । ସୁପ୍ରଭା ଏକା ଗଲେ ନିବାତକବଚ ପାଖକୁ । ନିବାତକବଚ ସୁପ୍ରଭାଙ୍କ ରୂପ ଦେଖି ଚମକିଗଲା । ସେ କହିଲା,

'ତମେ ମୋତେ ବିବାହ କରିବ ?'

'କରିପାରେ କିନ୍ତୁ ଗୋଟେ ସର୍ତ୍ତରେ !'

'କି ସର୍ତ୍ତ ?'

'ତୁମେ ଜାଣ ମୁଁ ସ୍ୱର୍ଗର ଅପସରା । ମୁଁ ଅମର । କାଲେ ତୁମେ ମରିଯିବ...!'

'ହା...ହା...ହା... ! ମୋତେ ମାରିବ କିଏ ! ମୁଁ ଅମରବର ପାଇଛି ।'

'ମିଛ !'

'ହା...ହା...ହା...!! ମିଛ ନୁହେଁ...ସତ ..! ମୋତେ କେବଳ ମାରିପାରିବ ମଣିଷ ! ମାତ୍ର ଏମିତି ବୀର କିଏ ଅଛି ମଣିଷମାନଙ୍କ ମଧ୍ୟରେ ! ତା'ଛଡ଼ା ମୋ' ଜୀବନ ରହିଛି ମୋ' ଜଙ୍ଘରେ । କୋଉ ବୀର ମୋ' ଜଙ୍ଘ ଉପରେ ଆକ୍ରମଣ କରିପାରିବ ?'

'ତୋ' କାଳ ପୂରିଲା...ଅସୁର ରାଜା !' ସେ ଦିଗରୁ ହୁଙ୍କାର କଲେ ଅର୍ଜୁନ । ସେ ଲୁଚିବା ଜାଗାରୁ ବାହାରି ଆସିଲେ । ଯୁଦ୍ଧକୁ ଡାକରା ଦେଲେ ।

ଉଭୟଙ୍କ ଭିତରେ ଯୁଦ୍ଧ ଚାଲିଲା ! ସେ ଗୋଟେ ନାହିଁ ନ ଥିବା ଯୁଦ୍ଧ । ଅନେକ ଅସ୍ତ୍ର କଟାକଟି ଚାଲିଲା । ଶରର ପ୍ରତିଶର ହେଉଥାଏ ।

ନିବାତକବଚର ଅସୁମାର ଅସୁର ସେନା । ସେମାନେ ଆସିଲେ । ରେ ରେ କାର ପାଟିକରି ଯୁଦ୍ଧଭୂଇଁକି ଡେଇଁ ପଡ଼ିଲେ । ଅର୍ଜୁନଙ୍କ ପକ୍ଷରେ ରହିଲେ ଦେବତା ଓ ସେମାନଙ୍କ ସୈନ୍ୟ ।

ଅର୍ଜୁନ ଓ ନିବାତକବଚ ଦୁହେଁ ଲଢ଼ୁଥାଆନ୍ତି । ନିବାତ ଗୋଟାଏ ଚକ୍ରଧରି ଅର୍ଜୁନଙ୍କୁ ଆକ୍ରମଣ କଲା । ଅର୍ଜୁନ ହାରିବାର ଛଳନା କରି ପଡ଼ିଗଲେ । ନିବାତର ଆନନ୍ଦ ଆଉ ଦେଖେ କିଏ ! ସେ ଖୁବ୍ ପାଟିରେ ହସି ଉଠିଲା । ଖୋଲିଗଲା ନିବାତର ପାଟି । ବିକଟ ଦାନ୍ତଭିତରୁ ଦେଖାଗଲା ତା'ର ଜିଭ ।

ଏଇଥିଲା ସୁଯୋଗ । ବଡ଼ ଧନୁର୍ଦ୍ଧର ବୀର ଅର୍ଜୁନ । ସେ ଆଖିର ପିଛୁଳାକରେ ଶରମାରିଲେ । ନିବାତର ଜିଭ କାଟିପକାଇଲା ଶର । ଗଛକାଟିଲାପରି କଚାଡ଼ି ହୋଇ ପଡ଼ିଲା ଅସୁରରାଜ ।

ଦେବତାମାନେ ଫୁଲ ବରଷିଲେ । ଆନନ୍ଦ କଲେ । ଅର୍ଜୁନଙ୍କୁ ଧନ୍ୟ ଧନ୍ୟ କହିଲେ । ଇନ୍ଦ୍ରଙ୍କ କଥା ଅନୁସାରେ ସେ ବିବାହ କଲେ ସୁନ୍ଦରୀ ସୁପ୍ରଭାଙ୍କୁ । ସ୍ୱର୍ଗରେ ରହିଲେ ସାତମାସ । ତା'ପରେ ସେ ଫେରିଲେ ପୃଥିବୀକି । ଏଠି ଅନେକକାଳ ସେ ମହାବୀର ଭାବେ ରହିଲେ, ଯଶ ପାଇଲେ ।



# ଠିକ୍ କଥା

ରାସ୍ତା କଡ଼ରେ ଗୋଟିଏ ଝଙ୍କା ଆମ୍ବଗଛ । ଡାଳପତ୍ର ମେଲେଇ ଅନେକ ଦିନରୁ ସେ ସେଇଠି ଥାଏ । ଏତ୍ତେ ମୋଟ ଗଣ୍ଡି । ବଡ଼ ବଡ଼ ଡାଳ । ଗହଳ ଛାଇ । ଛାଇରେ ଅନେକ ବାଟୋଇ ବିଶ୍ରାମ ନିଅନ୍ତି, ଥକା ମାରନ୍ତି । ତା'ପରେ ଗଲାବେଳେ ଗଛକୁ ପ୍ରଶଂସାକରି ଚାଲିଯାଆନ୍ତି ।

ସେ ଗଛରେ ପୁଣି ଅନେକ ମିଠା ଫଳ । ଫଳଗୁଡ଼ିକ ଝୁଲୁଥାଆନ୍ତି ପବନରେ । ପାଚିଲେ ତଳେ ପଡ଼ନ୍ତି । ଲୋକେ ଖାଆନ୍ତି ।

ସେମିତି ଥରେ···

ଫଳଖାଇ ବାଟୋଇଟିଏ ପ୍ରଶଂସାକରି ଚାଲିଗଲା !

ଆଉ ସଙ୍ଗେ ସଙ୍ଗେ ମାଟିତଳୁ ଗୋଟାଏ ଆବାଜ ଆସିଲା । 'ହାୟ ହାୟ !! କେତେକଷ୍ଟ ମୋତେ ସହିବାକୁ ହେଉଛି । କେତେ ବୋଝ ମୁଁ ବୋହୁଛି ! ଏଇଟା ମୋର ଗଣ୍ଡି, ତା' ଉପରେ ଏତେ ଡାଳ, ଡାଳର ଶାଖା, ପତ୍ର; ଶଗଡ଼ ଶଗଡ଼ ଫଳ ସବୁର ଓଜନ ସମ୍ଭାଳିଛି ମୁଁ । ବହୁତ ଇଚ୍ଛା ହୁଏ ଟିକେ ଉପରକୁ ଯିବି । ଉପରେ ମୁକ୍ତ ପବନ ଖାଇବି, ସୁନା ସୂରୁଯର କିରଣ ପାଇବି; ଦେଖିବି ରଙ୍ଗଭରା ଦୁନିଆଁ । ହେଲେ, ମୋ' କପାଳ ଏମିତି ଖରାପ ଯେ ସେ ସବୁ ମୋ' ପାଇଁ ସାତ ସପନ ! ମୁଁ ଖାଲି ଏଇ ମାଟିତଳେ ବନ୍ଦୀହୋଇ ରହିଛି । ଛୋଟଥିଲା ବେଳେ ତ ଆହୁରି ଦୁଃଖ । ଲୋକେ କେତେଥର ମୋତେ ଉପାଡ଼ି ନିଅନ୍ତି । ଏଠି ଲଗାନ୍ତି, ସେଠି ଲଗାନ୍ତି । ଏତେ କଷ୍ଟ କିଏ ସହିବ ହେ । କେବଳ ଭଗବାନ ଜାଣନ୍ତି, ମୋ' ଦୁଃଖର କଥା । ଏ ଗଣ୍ଡିଟା ଏ ଡାଳ, ପତ୍ର ସଭିଏଁ ମୋ' ଉପରେ ଭରାଦେଇ ରହିଛନ୍ତି । ବଡ଼ ମଜାରେ ସେମାନେ ଅଛନ୍ତି ଏକା ।'

ଗଣ୍ଡି ଶୁଣିଲା ଏକଥା । ସଙ୍ଗେ ସଙ୍ଗେ କହିଲା, 'ଚୁପ୍ କରହେ ! ବହୁତ ବଡ଼ବଡ଼ କଥା କହୁଚ । ଭାବୁଚ ମୁଁ ସୁଖରେ ଅଛି ! ମୋ' ଦୁଃଖ ମୁଁ କେତେ ବାହୁନିବି ! କହିଲେ କି କିଏ ଜାଣିବ ! ମନ ପୋଡ଼ିଗଲେ ଜାଣିବ କିଏ । ମୋ' ଉପରେ ଅଚାନ୍ତି···ଏତେ ଏତେ ଡାଳ, ଅସଂଖ୍ୟ ପତ୍ର ! ସେମାନଙ୍କ ଭାର ସହି ସହି ମୁଁ କୁଜା ହେଇଗଲିଣି । ଝଡ଼ି ବେଳେ ବେଳେ ମୋତେ ମୋଡ଼ମାଡ଼ ଦିଏ । ଗୋଟା ଦେହ ମୋ'ର କଟକଟ କରେ । ସବୁବେଳେ ମୋ'ର ତାକୁ ଡର । କେତେବେଳେ ସେ ଆସି ମୋତେ ଭାଙ୍ଗିଦେବ କିଏ ଜାଣେ ।'

ଆଉ ଗୋଟେ କଥା । ଲୋକେ ଏଇବାଟେ କାଠନେଇ ଯାଆନ୍ତି । ମୋ'ଉପରେ ଡେଉଁରି ରଖନ୍ତି ବୋଝ ବୋଝ କାଠ, କାଠର ବିଡ଼ା । ମୋ' ଦେହ ଖଣ୍ଡିଆ ଖାବରା ହୋଇଯାଏ । କାଠୁରିଆମାନେ, ଗାଈଆଳ-ପିଲାଏ ଟାଙ୍ଗିଆ ଚେଣ୍ଟ ପକାନ୍ତି କେତେଥର, ତା'ର ହିସାବ ରଖିଚ ତ ଭାଇ ! ଉଃ ! ସିଏ ଯୋଉ କଷ୍ଟ ! ରକତ ବାହାରି ଯାଉଥିବ, ଚମଡ଼ା ଝଡ଼ିଯାଉଥିବ; ଜାଆନ୍ତା ଚମକୁ ଥର ଥର କରି କାଟୁଥିବେ ! ଏଇ ଯୋଉ ପତ୍ରଗୁଡ଼ାକ ଅଛନ୍ତି, ଏଗୁଡ଼ାକୁ ପରି ମୁଁ ବୋହି ରଖିଚି । ଏମାନେ କୋଉକାମର କହିଲ ! ପବନରେ ଦିନରାତି ଖାଲି ନାଚୁଚନ୍ତି ତ ନାଚୁଚନ୍ତି ।'

ଗଛଗଣ୍ଡିର ଏକଥା ଶୁଣିଲେ ପତ୍ରମାନେ । ସେମାନେ ପବନ ଲହରରେ ଫଡ଼ଫଡ଼ କରି ଉଠିଲେ । ସେମାନେ କହିଲେ, 'ଆମେ ତମ ବୋ' ଜଣଙ୍କ କଥାବାର୍ତ୍ତା ଶୁଣିଲୁଣି !"

'କ'ଣ ହେଲା ! ତମେଗୁଡ଼ା ତ ନିକମା ନାଚୁଆ ପିଲାଗୁଡ଼ାକ···' ଗଣ୍ଡି ପାଟିକଲା !!

'ସେମିତି କୁହନି ଭାଇ ! ଏତେ ସ୍ୱାର୍ଥପର ହୁଅନି । ପରର ଉପକାର ଭୁଲନି । ମିଛଟା ଭଲ ନୁହେଁ । ପରନିନ୍ଦା ମଙ୍ଗଳପ୍ରଦ ନୁହେଁ । ତମେ କାହୁଁ ଜାଣିବ, ତମପାଇଁ···ଆମେ ତମପାଇଁ କେତେ ଦୁଃଖ ସହୁ । ଏଇ ଖରାଦିନ କଥା ଧରୁନ ।

ନଆଁ ଗାଳଦିଏ ନଆଁର ରବି
ପୋଡ଼ଜଳ ଆମେ ମରୁ,
ଖରର ଧାସରେ ସିଝି ସିଝି ଆମେ
ଶୁଖି ଶୁଖି ତଳେ ଝରୁ !

ତୁମେ ଆଗମରେ ଥାଅ ! ଖରର ତାଉ ତମେ ପାଅକ ! ତମଣ-ପାଇଁ ଆମର ଏତେ କଷ୍ଟ, ବୁଝିଲ ! ଆଉ ଧାରଶ୍ରାବଣ ହେଲେ ! ଓହୋ, ଯୋଉ ବରକୋଳଆ ଟୋପା ! ଠୋ ଠୋ ପିଟି ହେଉଥିବ । ଜୀବନ ଛୁଡ଼ ଯାଉଥିବ । ତମକୁ ନେଇଣ ରଖିଥାଉ ଆମେ । ନ ହେଲେ ତମ ଜୀବନ ତ ଅକଣ ନା କଅଣ ହେଇଯାଆନ୍ତା ! ଆମେ ପାଣିକ ସମ୍ଭାଳୁ । ତମ ଦ'ଜଣଙ୍କୁ ସମ୍ଭାଳୁ । ତା' ନ ହେଲେ ପାଣିରେ ତମେ ତଳପଡ଼ନ୍ତ । ଉପୁଡ଼ଯାଆନ୍ତ !

'ଆମ ସୁଖ କଥା କହିଲ ! ହଇହେ, କେତେ ଆମର ଜୀବନ ! ଖରା, ବରଷା କାକର ଖାଇ ଆମେ ପରା ଆଜ ଆସି କାଲ ଯାଉ । ଶୁଖି ତଳେ ପଡ଼ିଲୁ ତ ଶେଷ ! ସେଇଠି ପୁଣି ଆମକୁ ଏକାଠି କରନ୍ତ । ଆମେ ଖୁସି ହେଉ । ଏ ଖୁସିଟା ବେଶୀ ବେଳ ରହେନ । ଲୋକେ ଏକାଠି କରନ୍ତି ଟିକେ ନଆଁ ଲଗାଇବା ପାଇଁ । ତା'ପରେ···! ତା'ପରେ ଆମେ ମ୍ରାଉଁଶ ! ଅବଶ୍ୟ ଏ ଫଳଗୁଡ଼ିକ କଥା ନିଆରା ! ସେମାନେ ଖାଲି ତୋଳଖେଳରେ ମାତିଥାଆନ୍ତି । କଅଣ ନା,

ବାଇଯାର କ ଯାଏ !
ବାଅକଲେ ବସା ଦୋହଲୁଥାଏ !!'
ତହିଁରେ ପୁଣି ଲୋକେ ସେମାନଙ୍କୁ କେତେ ଆଦର କରନ୍ତି !!

ଫଳମାନେ ଏକଥାରେ ବଡ଼ ଦୁଃଖିତ ହେଲେ । ସେମାନେ କହିଲେ,

'ଭାଇଭଉଣୀଏ" କହୁଚ କସ ହେ,
କୁହନାଇଁ ଆଉ ବେଶୀ,
କଞ୍ଚା ମିଛଗୁଡ଼ା ଶୁଣି କାଲେ କଏ
ମନେ ମନେ ଦେବେ ହସି !'

'କ'ଣ ଯେ କହୁଚ···ଆମେ ବୁଝିପାରୁନୁ ! କହୋ, ଆମେ ସୁଖରେ ଅଛୁ ! ଆମର ପୁଣି ସୁଖ କୋଉଠୁ ଆସିଲା··! ଜନମରୁ ମରିବା ଯାଏ ଅମେ ପରା ଦୁଃଖରେ ଘାଣ୍ଟି ହୋଇ ହୋଇ ମରୁ ।'

'କଷିରୁ ଆମର ଡର । ଏଇ କଏ ମାରିଲାରେ । ପିଲାଙ୍କୁ ଦେଖିଥିବ । କେତେ ଟେକା, ପଥର, ବାଡ଼ି ସେମାନେ ନ ପୋପାଡ଼ନ୍ତି । ସେସବୁ ମାଡ଼ କଏ ସହେ ! ପାଚିଲା ପରେ କ'ଣ ହୁଏ, ଦେଖ ! ଲୋକେ ଆମକୁ କାଟିବେ, ନ ହେଲେ ଶ୍ରେଷି ଶ୍ରେଷି ଖାଇବେ । ସେତିକବେଳେ କେମିତି ସୁଖ କହିଲ !'

'ଆଉ ସବୁବେଳେ ଆମେ ଗୃହୁଁ ସୁନ୍ଦର ହେବୁ, ମିଠା ହେବୁ । ନ ହେଲେ, ସେମାନେ ଆମର ଝାକୁଆକୁ ଲଗେଇବେନ ହେ । ଆମ୍ବ ଲା ଅମ୍ବକୁ କଏ ଖାଏ ! ଆମ ଖଟାହେଲେ, ଗଛ କଟା ହେବ । ତା'ପରେ ନିଆଁରେ ଜାଳ ହେବ । ଆଉ ଆମକୁ ନିନ୍ଦୁଚ କଅଣ ମ !'

ଥାଉ ! ଥାଉ ସେ ଫୁଟାଣି !' ଚେର ତଳୁ କହିଲା ! 'ଏତେ ବଡ଼େଇ କଆଁ ମ । ମୁଁ ନ ଥିଲେ ଏ ଗଣ୍ଡି, ପତ୍ର, ଫଳ କଏ ରହନ୍ତା ! ତମପାଇଁ ମୁଁ ମାଟିଘାରି ବୁଲୁଚି । କେତେକୁଆଡେ ଯାଇ ଖାଇବା ରସ ପାଣି ଆଣୁଚି । ତମକୁ ଦଉଚି । ସେସବୁ ନେଇ ତମେ ଜୀଇଁଚ, ବଢ଼ୁଚ । ଆଉ ବଡ଼େଇ କରୁଚ । ମୁଁ ପରା ଟିକେ ହେଲା କଲେ ତମର ସଭିଙ୍କର ଭେଳା ବୁଡ଼ିବ । ଗଛ ଝାଉଁଳିଯିବ । ଫଳ ହେବନି । ଆଉ ଫୁଟାଣି କରୁଚ କ'ଣ । ମୋ' କଥା କେହି ଭାବୁନ ।'

ଠିକ୍ ଏତିକବେଳେ ଆଉ ଗୋଟିଏ ଗମ୍ଭୀର କଥା ଶୁଣାଗଲା । ସେ କହିଲେ, 'ମୁଁ ମାଟି···ମାଟି କହୁଚି । ତମ ସବୁରି ମୂଳ ପରା ମୁଁ । ତମ ସଭିଙ୍କୁ ପରା ସମ୍ଭାଳି ରଖିଚି ମୁଁ ତ କାହିଁ ଦୁଃଖ କରୁନି । ଆରେ ବାବୁ, ଯିଏ ସହେ ସିଏ ବଡ଼ । ତା'ଛଡ଼ା ଅନ୍ୟପାଇଁ ଯିଏ କଷ୍ଟ କରିପାରିବନି, ତା ଜୀବନ ଧିକ୍ ! ଚେର, ଗଣ୍ଡି, ପତ୍ର, ଫଳ ଏସବୁର

ମୂଲ୍ୟ ଅଛି । କେହି ସାନ ନୁହନ୍ତି କି କେହି ବଡ଼ ନୁହନ୍ତି । ସମସ୍ତେ ଗୋଟେ ଗୋଟେ କାମପାଇଁ ତିଆରି । ଯାହାଦ୍ୱାରା ଯାହା ହୋଇପାରିବ, ସିଏ ଖୁସିରେ ସେ କାମ କରିନେବା ଉଚିତ ।

ଗୁରିଆଡ଼ୁ ଶୁଭିଲା, 'ଠିକ୍ କଥା ମାଟି ଠିକ୍ କଥା
ମିଛରେ ମିଛରେ ଝଗଡ଼ା ଆମର
ମିଛରେ ଅମର ଶିରବଥା ।
ମାଟିଠାରୁ କିଏ ବଡ଼ ନାହିଁ,
ମାଟିରୁ ସବୁର ଜନମ ହୁଅଇ
ମାଟିରେ ମିଶଇ ସବୁ ଯାଇ ॥'
ମାଟି ପଚାରିଲା, 'ଅଉ କଳି କରିବ ନାହିଁ ?'
ସଭିଏ କହିଉଠିଲେ, 'ନାହିଁ···ନାହିଁ ··ନାହିଁ !!!'



# ପିତା ଫଳ

ମଧ୍ୟ ଜବଦ୍ୱୀପର କଥା ।

ସେଠି ଜଣେ ରାଜା ଥାଆନ୍ତି । ବଡ଼ ନିଷ୍ଠୁର । ଛାତି ତାଙ୍କର ପଥରଠୁ ଟାଣ । ସେଠି ଦୟା, ମାୟା, କ୍ଷମା କିଛି ନାହିଁ । ସିଏ ଜଣେ ଅଜବ ମଣିଷ । ଯେତେବେଳେ ଯାହା ଇଚ୍ଛା, ତାହା କରିବେ । ସବୁ ମନମୁଖୀ । ତାଙ୍କ ପ୍ରତାପରେ ସରଜା ପାଟକ ଗ୍ରାନଆଁ ! ସେମାନେ ଛାତି ଛାତି ରଡ଼ କରୁଥାଆନ୍ତି । ସମସ୍ତେ ଭାବୁଥା'ନ୍ତି କେମିତି ଏ ରାଜା ଯାଆନ୍ତେ ···କେମିତି ଏ ଖତମ ହୋଇଯାଆନ୍ତେ···!

ଘଟଣା ଏମିତି ଥିଲା ସମୟରେ···

ଥରେ ତାଙ୍କ ସଭାକୁ ଜଣେ ଜ୍ୟୋତିଷୀ ଆସିଲେ । ସେ ଜଣେ ଯୋଗୀ । ଆଗତ ଭବିଷ୍ୟ କଥା ଜାଣି ପାରୁଥିଲେ । ଲୋକେ ତାଙ୍କୁ ଖୁବ୍ ଭକ୍ତି କରୁଥିଲେ । ରାଜା ପଚାରୁଥିଲେ,

'କହନ୍ତୁ ସନ୍ନ୍ୟାସୀ, ମୋ'ର ଜୀବନ ସମ୍ପର୍କରେ···କହନ୍ତୁ କ'ଣ ଘଟିବ···!'

ସନ୍ନ୍ୟାସୀ ଟିକେ ରହିଲେ । ସେ କିଛି କହିଲେନି । ହୁଏତ କହିବେ ନ କହିବେ, ଏଇ ଚିନ୍ତା କରୁଥିଲେ ।

ରାଜା ଅଧୀର ହେଲେ । ସେ ପାଟିକରି ଉଠିଲେ, 'ଜାଣନ୍ତି ସନ୍ନ୍ୟାସୀ···ମୁଁ ପ୍ରଭୁ ମୃଦଙ୍ଗ ! ମୋର ଏ ନାଁ ଶୁଣିଲେ ଗର୍ଭିଣୀ ଗାଈ ବାଟ ଛାଡ଼ିଦିଏ ! ତା' କଥାକୁ ଅବମାନନା କଲେ ଫଳ ଦୁଃଖମୟ ହେବ ।'

'ଆପଣଙ୍କ ଭାଗ୍ୟର ଦୁଃଖମୟ ଭବିଷ୍ୟତ କଥା ଚିନ୍ତାକରି ମୁଁ ଚିନ୍ତିତ ହୋଇପଡ଼ିଛି···ରାଜା ।'

'କ'ଣ କହୁଲେ ! ମୋ'···ଠିକ୍ କରି କହନ୍ତୁ ।'

'ଠିକ୍ କରି କହୁଚି । ···ଆପଣଙ୍କ ପ୍ରଥମ ପୁଅ···'

'କ'ଣ ହେବ ପ୍ରଥମ ପୁଅ···?'

'ପିତୃହନ୍ତା !'

'ମାନେ ! ମୋତେ ମାରିବ ! ମୋ' ପୁଅ ମାରିବ ମୋତେ ! ହସାଉଚ ଯୋଗୀ··ହସାଉଚ !'

'ନା···ରାଜା ! ଏହାଇ ଆପଣଙ୍କ ଭାଗ୍ୟରେ ଘଟିବ !'

'ପ୍ରଭୁ ମୃଦଙ୍ଗ ଏହାର ଯଥେଷ୍ଟ ଆଗରୁ ସବୁ ବନ୍ଦୋବସ୍ତ କରି-ପାରିବ ! ···ଆରେ କିଏ ଅଛୁ ?' ରାଜା ଗର୍ଜି ଉଠିଲେ ।

ଚାରି ପାଞ୍ଚଜଣ ବର୍ଛାଧାରୀ ପାଇକ ଆସି ପହଞ୍ଚିଗଲେ ।

'ଏ ପାଗଳା ବାବାଜୀଟାକୁ ମାରିଦଅରେ ! ଏ ଗୋଟେ ମିଛୁଆ । ଏଇଟା ଗୋଟେ ବୁଜୁଠକ !'

କେହୁ ଏ କାମ କଲେନି ।

ସନ୍ନ୍ୟାସୀ ନିଜେ ଚାଲିଗଲେ ।

ରାଜା ଜୋର୍‌ରେ ହସୁଥିଲେ··ହା···ହା···ହା !!

ଏଇ ରାଜା ପ୍ରଭୁ ମୃଦଙ୍ଗ । ବଡ଼ ପ୍ରଚଣ୍ଡ । ବଡ଼ ନିର୍ଦ୍ଦୟ !

ସେଇ ରାତିରେ···ଏ କଥାଟା ଥରକୁଥର ତାଙ୍କ କାନରେ ବାଜିଲା । ରାଜା ଠିକ୍ କଲେ, ଦେଖାଯାଉ ମୋ'ର ପ୍ରଥମ ସନ୍ତାନ କ'ଣ ହେଉଚି ।

କିଛି ମାସ ପରେ···

ତାଙ୍କ ଉଆସ ପବନକୁ ଲହରାଇ ଦେଇ ଗୋଟିଏ ଶିଶୁର କାନ୍ଦ ଶୁଭିଲା ! ସେ ଥିଲା ରାଜା ପ୍ରଭୁ ମୃଦଙ୍ଗଙ୍କର ପହିଲି ସନ୍ତାନ । ସିଏ ଗୋଟିଏ ପୁଅ ।

ରାଜାଙ୍କ ଗୃହରେ ଗୋଟାଏ ଅଜଣା ଭୟ ଖେଳିଗଲା । ସେ ପୁଅକୁ ଦେଖିବାକୁ ଗଲେ । କାହିଁକି ଲୋକେ ମିଛରେ କହୁଥିବେ । ବୁଝିଅଟାଏ ହୋଇଥିବ···କହୁଥିବେ ପୁଅ ।

ପୁଅଟାକୁ ଦେଖି ସେ ରାଗରେ ଓଠ କାମୁଡ଼ିଲେ । ଆଃ ! ଏଇ ବଳଦଟ ନାଁକୁ ପିଲା । ସିଏ ପୁଣି ମୋତେ ମାରିବ ! ଆରେ, ଦେଖ୍ ଏଇ ରାତିରେ ଦେଖ୍ !! କିଏ କାହାକୁ ମାରିବ ଦେଖି ନେ !

ତାଙ୍କର ସବୁଠୁ ବିଶ୍ୱାସୀ ଗୃହରକ୍ଷୀ ସେ ଡାକିଲେ । କହିଲେ ତାକୁ, 'ଆଜି ରାତିରେ ରାଣୀ ଶୋଇଥିବା ଅବସ୍ଥାରେ ତୁ ନେଇଯିବୁ ରାଜକୁମାରଙ୍କୁ !'

'ହଜୁର !'

'କେଉଁଠିକି ନେବୁ ?'

'କହନ୍ତୁ ହଜୁର !'

'ନେଇଯିବୁ ସମୁଦ୍ରକୂଳକୁ । ସେଠି ତା'ର ତଣ୍ଟି ଚିପି ଫିଙ୍ଗିଦେବୁ ସମୁଦ୍ରକୁ ।'

ଏଇପରି ଆଦେଶ ଦେଇ ନୃଦଙ୍ଗ ସବୁ ବ୍ୟବସ୍ଥା କରିଦେଲେ । ରାଣୀ ତ ଅଚେତ ହୋଇ ଶୋଇ ଥାଆନ୍ତି ! ତାଙ୍କ କୋଳରୁ ସମସ୍ତଙ୍କ ଅଜାଣତରେ ରାଜକୁମାର ହରଣଗ୍ରସ୍ତ ହେଲେ ।

ସମୁଦ୍ରକୂଳରେ ପହଞ୍ଚିଲା ସେ ଲୋକଟି । ବାଟସାରା ଭାବି ଭାବି ଯାଉଥିଲା ସେ···କି ହୃଦୟହୀନ ଏ ରଜା ! ବାପହୋଇ ନୂଆ ପୁଅଟା- ଉପରେ ଏତେ ଅତ୍ୟାଚାର ! କେମିତି ମାରିବ ଏ ଟିକି ପିଲାଟିକି ! ଓଃ ! ଆଖି ବୁଜିଦେବ । ଫିଙ୍ଗିଦେବ ସମୁଦ୍ରକୁ । ଘୋ ଘୋ ମାଡ଼ିଆସୁଥିବା ସମୁଦ୍ରର ଲହରୀ । ବୋହିନେବ ପିଲାଟିକୁ । ବାସ୍ ! ଆଖିର ପିଛୁଳାକେ ଶେଷ ହୋଇଯିବ ତା' ନୂଆ ଜୀବନଟା !

ସମୁଦ୍ରକୂଳରେ ସେ ଆଖିବୁଜିଲା । ପିଲାଟିକି ଫିଙ୍ଗିବା ଆଗରୁ ଭାବିଲା, ମୁଁ ତ ଏଯାଏ ପିଲାଟିର ମୁହଁ ବି ଦେଖିନି । ସେ ମୂଲ୍ୟବାନ୍

ରେଶମର କପଡ଼ା ଖୋଲି ଦେଖିଲେ—ଗୋଟିଏ ଚକଚକ ସୁଖଶ୍ରୀ ଦିବ୍ୟ ମଣିଷ ଛୁଆଟିଏ । ଏତେ ଟିକେ ଗାଲ ଓଠ । ନାକଟି ଖଣ୍ଡାପରି । ଭ୍ରୁ ଦୁଇଟା ବେଶ୍ ଲମ୍ବ । କୁଞ୍ଚକୁଞ୍ଚିଆ କଳାବାଳ । ଆଃ ! କି ସୁନ୍ଦର ଏ ପିଲାଟି ! ଦିବ୍ୟ ! ରଜାପିଲାଟି ! ଆରେ, ଏହାଙ୍କୁ ଆଉ ଦେଖିବନି । ଦେଖିଲେ କାଳେ ମାୟା ଲାଗିଯିବ !

ସେ ଆଖି ବୁଜିଲା । ଭାବିଲା, ଏଥର ଆଉ ପିଲାଟାକୁ ଦେଖିବନି । ସେ ଆଖିବୁଜି ଫିଙ୍ଗିଦେବ । ଆଉ ଆଖିବୁଜି ସେ ରେଶମ କପଡ଼ାସହ ଠିକ୍ ଫିଙ୍ଗିଦେଲା ବେଳକୁ ସେଇ ଛୁଆଟା ଚମକି ଗଲା କି କ'ଣ କାନ୍ଦି-ଉଠିଲା । ଲୋକଟିର ଘୃଣ୍ଣ ଭିତରଟା କ'ଣ ନା କ'ଣ ହୋଇଗଲା । ସେ ଆଉ ଫିଙ୍ଗିବ କ'ଣ···ପିଲାଟିକି ବୁକୁରେ ଜଡ଼ାଇ ଧରିଲା । ଟିକେ ପାଟିକରି କହିଲା, 'କାନ୍ଦନି ରାଜକୁମାର···କାନ୍ଦନି । ତମେ ଅଭାଗା ବାପର ଅଭାଗା ପୁଅ । ତା' ନ ହୋଇଥିଲେ, ତମକୁ ଏମିତି ଘରୁ ମୁଁ ଧରି ପଳାଇ ଆସିଥା'ନ୍ତି । ଆସିପାରି ଥାଆନ୍ତି ନା । ତମ ବାପ···ଆମ ରଜା ପରା କହିଚନ୍ତି ତମକୁ ସମୁଦ୍ରରେ ଫିଙ୍ଗିଦେବାକୁ । ମୁଁ ଆଉ କ'ଣ କରିବ !'

ସେଠି ଜନପ୍ରାଣୀ ଆଉ କେହି ନ ଥିଲେ । ଲୋକଟିର କଥା କେବଳ ଦୁଇଜଣ ଶୁଣୁଥିଲେ । ଜଣେ ସେ ନିଜେ । କିଛି ବୁଝୁଥିଲା । ଆଉ ଜଣେ କଅଁଳା ଶିଶୁ । ପୂରା ଅବୋଧ ସେ ।

ମାତ୍ର ଆଉ ଜଣେ ସେଠି ଶୁଣୁଥିଲା···ଏ ସମସ୍ତଙ୍କ ଅଗୋଚରରେ । କିଏ ସେ ! କିଏ !!

ପିଲାଟିକି ସେ ଫିଙ୍ଗିପାରିଲାନି । ସଙ୍ଗେ ସଙ୍ଗେ । ସେଇଠୁ ସେ ଭାବିଲା, ଜଳର ଦେବତାଙ୍କୁ ପଚାରେ । ସିଏ ତ ସବୁ ଦେଖୁଚନ୍ତି । ଶୁଣୁଚନ୍ତି ଆଉ ଜାଣୁଚନ୍ତି ସବୁ । ସିଏ ଯାହା କହିବେ, ତାହା ହେବ । ଆଉ ସତକୁ ସତ ଜଳଦେବତା ଏସବୁ ଦେଖୁଥିଲେ ।

ଲୋକଟି କହିଲା,

'ଜଳଦେବତା ହେ ଜଳଦେବତା,
ନୀରବ ନ ରହି କହ ହେ କଥା ।
ରଜାର ଆଦେଶ ଦରିଆ ଜଳେ
ଫୋପାଡ଼ିଦେବ ଏଇ ଶିଶୁଟିକରେ ।
କହହେ ଦେବତା କଷ କରିବ,
ଫେରିଲେ ଧରି ମୁଁ ନିଶ୍ଚେ ମରିବ !'

ସଙ୍ଗେ ସଙ୍ଗେ ଲହରୀମାନ କଲକଳ ଶବ୍ଦ କରି ମାଡ଼ିଆସିଲା । ତା'ର ତଳେ ତଳେ ଗୋଟାଏ ଗମ୍ଭୀର କଣ୍ଠ କହିଲା, 'ଭୟ କରନା ! ଭୟ କରିବାର କିଛି କାରଣ ନାହିଁ । ସମୁଦ୍ରରେ ଅନେକ ଗୁହା । ଯେ କୌଣସି ଗୋଟିଏ ଗୁହାରେ ଥୁଆଇଦିଅ ପିଲାଟିକି । ତା'ର ଦାୟିତ୍ୱ ରହିଲା ମୋ'ଠି । ରଜା ପଚାରିଲେ କହିବ, ସମୁଦ୍ରଦେବତା ବରୁଣ (କ୍ୟାପ୍ଟି ବେଲରଂ)ଙ୍କୁ ଦେଇଚ । ତମର କିଛି କ୍ଷତି ହେବନି । ତମ ରଜା ପରି ତମେ ହୃଦୟହୀନ ନୁହଁ । ଏଇକଥା ଜାଣି ମୋତେ ଖୁବ୍ ଖୁସି ଲାଗୁଚି ।'

ଲୋକଟି ମନେ ମନେ କ୍ୟାପ୍ଟି ବେଲରଂଙ୍କୁ ଶହଶହ ପ୍ରଣାମ ଜଣାଇଲା । ସମୁଦ୍ରକୂଳିଆ ଗୋଟାଏ ଗୁହାରେ ପିଲାଟିକି ରଖିଦେଇ ସେ ଫେରିଗଲା ।

ରଜା ପଚାରିଲେ, 'କାମ ହେଲା ତ ?'

'ହଜୁର ! କାମ ହେଇଚି । ମୁଁ କ୍ୟାପ୍ଟି ବେଲରଂଙ୍କ ହାତରେ ଦେଇ ଦେଇଚି ପିଲାଟିକୁ ।'

'ବେଶ୍ ! ଯାଅ !' ରଜା ନିଃଶ୍ୱାସ ମାରିଲେ । ଏ ନିଃଶ୍ୱାସ ଆଶ୍ୱସ୍ତିର । କଣ୍ଟା ଗଲା । ଏ ପୁଣି ତା' ବାପକୁ ମାରିବ ! ରଜା ଖୁବ୍ ବଡ଼ ପାଟିରେ ହସି ଉଠିଲେ । ଲୋକେ ଭାବିଲେ, ରଜା ପାଗଳ ହେଇଗଲେ ନା କ'ଣ !

ରଜା ହସୁଥିଲାବେଳେ ରାଣୀ ଚଟାଣରେ ଗଡ଼ୁଥିଲେ । ତାଙ୍କ ଆଖିରୁ ଝରୁଥିଲା ଲୁହର ଗଙ୍ଗାଯମୁନା । ତାଙ୍କର ପହିଲାଫଳଟି ଶୂନ୍ୟରେ

କୁଆଡ଼େ ଉଡେଇଗଲା । ଦେଶରେ ଆନନ୍ଦ, ଉତ୍ସବ, ବାଇଦ କାହିଁ ! ସବୁ ଶୂନ୍ୟ ! ପୁଅ ନାହିଁ ।

ଏଇପରି ଦୁଃଖରେ କାନ୍ଦି କାନ୍ଦି ରାଣୀ ସେଇଠି ଚଟାଣରେ ଚେତା- ହରାଇ ପଡ଼ିଗଲେ । ବାସ୍ ! ସେଇ ହେଲା ତାଙ୍କର ଶେଷ ନିଦ ।

ସମୁଦ୍ରଦେବତାଙ୍କ ମନେପଡ଼ିଲା ଜଣେ କେଉଟର କଥା । ବଡ଼ରି ଗରିବ । ଆଉ ତା' କୋଳରେ ପୁଅଝିଅ ନାହିଁ ।

ଠିକ୍ ସେଇ ସମୟରେ ସେଇ କେଉଟଟି ଜାଲନେଇ ସମୁଦ୍ର କୂଳକୁ ଆସିଲା । ସମୁଦ୍ରଦେବତା କହିଲେ, ଶୁଣ, ଏଇ ସେପଟକୁ ଯାଅ । ସେଠି ତମପାଇଁ ଯାହା ଥୁଆହୋଇଛି, ନେଇ ଯାଅ । ସେ ତମର ସୌଭାଗ୍ୟର ଫଳ !'

ସମୁଦ୍ରଦେବତାଙ୍କ କଥା ଶୁଣି କେଉଟଟିର ମନ ଆନନ୍ଦରେ ଗଦଗଦହୋଇ ଗଲା । ସେ ଫିଙ୍ଗିଦେଲା ତା'ର ଜାଲକୁ । ଦଉଡ଼ିଗଲା ସେଇ ଗୁହା ଆଡ଼କୁ । ଆରେ, ସେ ଗୁହାରେ ଶୁଭୁଚି ମଣିଷଶିଶୁର କାନ୍ଦ ! ଦେଖିଲା ଭିତରେ ଦେବତା ଶିଶୁପରି ପିଲାଟିଏ । !

ବଡ଼ରି କେଉଟଟି ଉଠାଇନେଲା ସେ ପିଲାଟିକି । ଦଉଡ଼ିଲା ଘରକୁ । ତା' ସ୍ତ୍ରୀ ଦୂରରୁ ଦେଖିପାରିଲା । 'କ'ଣ ଆଣିଚ···କ'ଣ ଆଣିଚ···'କହି ସେ ଆଗେଇ ଆସିଲା । 'ଓହୋ, ଇଏତ କୋଉ ରଜାର ପୁଅ ।'

'ଇଏ ବ୍ରହ୍ମାଦେବତାଙ୍କର ଦାନ ! ଆମର କରୁଣ ଗୁହାରି ସେ ଶୁଣିଚନ୍ତି !' କେଉଟଟି ଶିଶୁଟିକୁ ପାଇବାର ଗୋଟାଯାକ କଥା କହିଗଲା । ସ୍ୱାମୀ ସ୍ତ୍ରୀ ଦିହେଁ ବ୍ରହ୍ମାଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଜଣାଇଲେ ।

ପ୍ରଭୁ ମୃଦଙ୍ଗ ଏବେ ନିଜର ସବୁ ଦୁଃଖ ଭୁଲିଗଲେ । କିଛିଦିନ ଲାଗି ରାଣୀଙ୍କ କଥା ଭୁଲିହେଲେ । ସମୟ ସବୁ ଦୁଃଖକୁ ଧୋଇ ପୋଛି ଦେଲା । ସଫା । ପୁଣି ନୂଆଜୀବନ । ରଜା ଆଉ ଜଣେ ରାଜକୁମାରୀଙ୍କୁ

ବାହାହେଲେ । ପୁରୁଣା ରାଣୀକ ତାଙ୍କର ସେ ପୁଅର କଥା ଆଉ ତାଙ୍କର ମନେ ନ ଥାଏ ।

ଏ ଭିତରେ ନୂଆରାଣୀଙ୍କର ଦୁଇଟି ପୁଅ ହେଲେ । ହେଲେ, ଏ ପିଲା ଦୁଇଟିର ଜୀବନ ବରବାଦ୍ ହୋଇଗଲା । ସେମାନେ ବାପାଙ୍କର ନିଷ୍ଠୁର କାମ ଦେଖି ଦେଖି ନିଜେ ନିଷ୍ଠୁର ହୋଇଗଲେ । ଶିଖିଲେ ନାନା ମନ୍ଦ କଥା ।

ମାତ୍ର କେଉଟର ଘରେ ଯୋଉ ପିଲାଟି ବଢ଼ିଲା···ସିଏ ହେଲା ନମ୍ର, ଶାନ୍ତ । ତା'ର ଗୁଣ ଫୁଲର ସୁବାସ ପରି ଚଉଦିଗକୁ ବିଛେଇଗଲା ।

କେଉଟ ଓ ତା' ସ୍ତ୍ରୀଟିର ମନ ଆନନ୍ଦରେ ଉଚ୍ଛୁଳି ଉଠୁଥାଏ । ସେମାନେ ଜାଣୁଥିଲେ କୋଉ ରଜାର ପୁଅ ସେମାନଙ୍କ ଛୋଟ କୁଡ଼ିଆଟିରେ ବଢ଼ୁଛି । ସେମାନେ ତାକୁ ଖୁବ୍ ସ୍ନେହ ଶ୍ରଦ୍ଧା କରୁଥାଆନ୍ତି । ମାତ୍ର ସେମାନଙ୍କ ମନରେ ସବୁବେଳେ ସନ୍ଦେହ···କେତେବେଳେ ପିଲାଟିର ବାପା ଆସି ତାକୁ ନେଇଯିବେ ।

ଦିନେ କେଉଟଟି ଜଣେ ଯୋଗୀ ପାଖକୁ ଗଲା । ଯୋଗୀ ପିଲାଟି ବିଷୟରେ ସବୁ ଜାଣି ପାରିଲେ । ହେଲେ, ସବୁକଥା ସେ ଖୋଲି କହିଲେନି । ସେ କେବଳ କହିଲେ, "ତାକୁ ପ୍ରଜାଙ୍ଗିରଣ (ଇଣ୍ଡୋନେସିଆନ୍ ଭାଷାରେ ପାଜାଜରଣ)କୁ ନେଇ ଯାଅ । ସେଠି ସେ ହାତ ହତିଆର ନିର୍ମାଣ, ସେ ସବୁର ବ୍ୟବହାର ଆଦି କଥା ଶିଖିବ । ଆଉ କମାର କାମରେ ଧୁରନ୍ଧର ହେବ ।"

କେଉଟ ବୁଢ଼ାଟି ତେଣେ କଲାନି । ସେ ପ୍ରଜାଙ୍ଗିରଣକୁ ନେଇଗଲା ପିଲାଟିକି । ସେଠି ମଧ୍ୟ ପିଲାଟିର ଖ୍ୟାତି ଖୁବ୍ ଅଳ୍ପଦିନ ଭିତରେ ବ୍ୟାପିଗଲା । ରଜାଙ୍କ କାନରେ ପଡ଼ିବାକୁ ବିଳମ୍ବ ହେଲାନି । ରଜାଙ୍କ ମନରେ ଗୋଟାଏ ଆଗ୍ରହ ଆସିଲା ।

ସେ ଜାଗାକୁ ଆସିଲେ ରଜା । ସେତେବେଳକୁ ପିଲାଟି ବିଷୟରେ ସେ ବହୁତ ଖବର ପାଇସାରିଲେଣି । ବଡ଼ ସୁନ୍ଦର ସେ ଖୁବ୍ ଚୋପା ଗୋରା । ବ୍ୟବହାରରେ ସମସ୍ତଙ୍କୁ କିଣିନେବ । କାମ ସେମିତି ପକ୍କା ।

ରଜା ଥରେ ପିଲାଟିକୁ ଚାହିଁଦେଲେ ତ ଡରିଗଲେ—ଡରିଗଲେ ଆଉ ସଙ୍ଗେ ସଙ୍ଗେ ଥରିଗଲେ । ତାଙ୍କ ଗୋଡ଼ରୁ ମୁଣ୍ଡଯାଏ ଗୋଟାଏ ଶିହରଣ ଖେଳିଗଲା । ଇଏ କ'ଣ ସମ୍ଭବ ! ତାଙ୍କ ପ୍ରଥମ ରାଣୀର ସବୁ ଚିହ୍ନ ପିଲାଟି ଦେହରେ ! ଇଏ କ'ଣ ତାଙ୍କରି ନିଜର ପୁଅ । ଇଏ କ'ଣ ଆଉ କିଏ ! ଏମିତି ପ୍ରଶ୍ନ ଉପରେ ପ୍ରଶ୍ନ ଉଠିଲା ତାଙ୍କର ମନଭିତରେ । ସେ ନୀରବରେ ପିଲାଟିକୁ ଜଗିରହି ଦେଖୁଥାଆନ୍ତି ।

ରଜା ପଚାରିଲେ, 'ହେ ଭେଣ୍ଡିଆ, କ'ଣ ତୋ'ର ନାଁ ? କିଏ ତୋ'ର ବାପ ଆଉ କିଏ ତୋ'ର ମାଆ ?'

ପିଲାଟି ହସିଦେଲା । ରଜାଙ୍କ ଉଦ୍ଧତ ବେଭାର ତା' ମନରେ ଦୟା ଆଣୁଥିଲା । ସେ କହିଲା, 'ଶ୍ରୀହଜୁର, ଏସବୁ ତ ଜାଣେ ନାହିଁ ମୁହିଁ ! ଜାଣେନା ମୋ ବାପା କିଏ...! ଜାଣେନା ମୋ' ମାଆ କିଏ ! ମୋ'ର ପାଳକ ପିତାମାତା ଅଛନ୍ତି । ସିଏ କହନ୍ତି ସମୁଦ୍ର ତୀରରୁ ଗୋଟିଏ ଗୁହାରୁ ସେ ମୋତେ ପାଇଥିଲେ :'

ରଜାଙ୍କ ଆଖି ଦପ୍ ଦପ୍ ହୋଇ ଜଳିଉଠିଲା । ସେ ଆଖିର ନିଆଁରେ ଦଗ୍ଧିଗଲା ଗୋଟାଏ ଧୂସର ଅତୀତ । ସେ ଅତୀତଟା ଜାଲୁ-ଜାଲୁଆ...ହୋଇ ଆଲୁଅ ହେଲା ।

ତା'ହେଲେ ସେ ଚାକର ମାରିନି ଶିଶୁଟାକୁ ! ସେ ବିଶ୍ୱାସଘାତ କଲା । ସେଠି ଆଉ ଦଣ୍ଡେ ରହିଲେନି ରଜା ! ସେ ସଙ୍ଗେ ସଙ୍ଗେ ଫେରିଲେ ରାଜଧାନୀକୁ ।

ଡଗରା ଯାଇ ସେଇ ପୁରୁଣା ଚାକରକୁ ଡାକି ଆଣିଲା ! ସେ ଆଉ ଏବେ ରଜାଘରେ କାମ କରୁନି । ବୁଢ଼ା ହୋଇଯାଇଛି । ଗାଁରେ ରହୁଛି ।

ରଜା ପଚାରିଲେ, 'ବୁଢ଼ା, ମନେ ଅଛି ତମକୁ ଗୋଟିଏ ଛୋଟ କଅଁଳା ପିଲାର ଦାୟିତ୍ୱ ଦେଇ···?'

'ହଁ···ହଁ···ହଜୁର : ଏ ଅବେଳରେ ସେ କଥା ଆଉ କାହିଁକି ହଜୁର ?'

'ଠିକ୍‌କୁହ । ସତକୁହ । ସେ ପିଲାକୁ ନେଇ ତମେ କ'ଣ କଲ ?'

ବୁଢ଼ାର ଗୋଟା ଦେହ ଥରି ଉଠିଲା । ସେ ଗଳା ସଫା କରିନେଲା ଆଉ କହିଲା, 'କହୁଚି ହଜୁର୍···କହୁଚି । ସିଏତ ଅନେକ ଦିନ ତଳର କଥା । ହେଲେ, ସେ କଥାଗୁଡ଼ା ପାସୋର ଯାଇନି···!'ବୁଢ଼ା ଖୋଲାଖୋଲି ଭାବେ ସବୁକଥା କହିଗଲା ।

'ଆଉ ଜାଣି···ସେ ପିଲା ବଂଚିଚି !

'ବଂଚିଚି ହଜୁର ! ବୁଢ଼ା ଆଖି ବନ୍ଦ କରିଦେଲା ! ତା'ଆଖିରୁ ଧାର ଧାର ଲୁହ ବହିଗଲା । ସତେ ଯେମିତି ସେ ପିଛିଲା ଦିନର ସେଇ ସମୁଦ୍ର, କ୍ୟାପ୍ଟିବେଲାରଂ, ଗୁହା ସବୁ ଏଇ ଦେଖିପାରୁଚି ।

ଧମକାଇ କହିଲେ ରଜା, 'ସାବଧାନ ପାଜି । ତୋ'ର ରକ୍ଷା ନାହିଁ ଆଜି । ତୁ ଯେଣୁ ଏଡ଼େ ଅବିଶ୍ୱାସୀ, ତୋ' ଗଳାରେ ଫାଶି । ଦେଖିବ, କିଏ ପିଠିରେ ପଡ଼ିବ ଆସି ।'

'ଖୁବ୍ ଭଲ କଥା ହଜୂର୍···ଖୁବ୍ ଭଲ କ··! ! ମନଟା ବହୁତ ଗୁଡ଼େଇ ପୁଡ଼େଇ ହେଉଥିଲା । ଏଥର ଏ ମନ ସଫା । ··କି ନ ହେଲେ ଆପଣଙ୍କ ଆଗରେ ସତଟା କହିଦେଲି । ଆଉ ଜାଣିଗଲି·· ସେଇ ପିଲାଟି ଜୀଇ ରହିଚି ଏଯାଏ । ଏଥର ମୁଁ ନିଶ୍ଚିନ୍ତରେ ମରିପାରିବି ହଜୁର୍ । ମରଣକୁ ଆଉ ଡରନାହିଁ ।'

ସୈନ୍ୟମାନେ ତାକୁ ବାନ୍ଧି ନେଲେ । ବଧ ଭୂମିରେ ତାକୁ ଶୂଳି ଦେଲେ ।

ସେମାନେ ରଜାଙ୍କ ପାଖକୁ ଲେଉଟି ଆସିଲେ ।

ରଜା ରାଗରେ ଗର୍ଜୁଥାଆନ୍ତି । କାଶିକର କହିଲେ, 'ଯାଆରେ ପାଇକମାନେ···ଯାଅ । ସେ କେଉଁଠି ବୁଢ଼ାକୁ ନେଇ ଆସ ।'

ପାଇକମାନେ ସେ ବୁଢ଼ାକୁ ପାଲିଙ୍କରେ ବସାଇ ଘେନି ଆସିଲେ ।

ବୁଢ଼ା ରାଜବାଟିରେ ପହଞ୍ଚିଲା । ତା'ଜୀବନ ଧୁକୁ ଧୁକୁ କରୁଚି । ସିଏ କି ଅପରାଧ କରିଚି ! ରାଜା ଏମିତି ବ୍ୟବହାର କରିବାର କି କାରଣ । ସେ ଘୁଷୁରି ଘୁଷୁରି ଯାଇ ରଜାଙ୍କ ପାଦତଳେ ପଡ଼ି ରହିଲା ।

'ତେ' ନାଁ ?'

'କାଇମାନ୍ ହଜୁର ।'

'ହୁଁ···କାଇମାନ୍, କୋଉଠୁ ଏ ପିଲାଟିକି ପାଇଲୁ ?'

'ହ-ଜୁ-ର୍-ସ-ମୁ-ଦ୍ର-କୂ-ଳ-ଗୁ-ହା-ରୁ ।'

'ଆରେ, ଭୂତ ଗୋଟେ କେଉଁଠି । ମାଛମରା ତୋ'ର ବେଉସା । ପୁଅକୁ କ'ଣ ରାଜକୁମାରମାନଙ୍କ ବିଦ୍ୟା ପଢ଼ାଉଚୁ ! ଅସ୍ତ୍ରଶସ୍ତ୍ର ଶିକ୍ଷାରେ ତ ସିଏ ବହୁତ ଆଗେଇ ଗଲାଣି ।···ହୁଁ···ତାକୁ କେଉଁଠି ବେଉସା ଶିଖାଇଲୁନି ?

'ହଜୁର ସିଏ ଗୋଟେ ରାଜକୁମାର ପରି ଦିଶୁଚି । ସେଇଥିପାଇଁ ତାକୁ ଏ ପାଠ ପଢ଼େଇଲି । ତା' କଥା, ତା' ଚାଲି, ତା' ବ୍ୟବହାର··· ସବୁ—ସବୁ—କେମିତି ରାଜକୁମାରମାନଙ୍କ ବ୍ୟବହାର ପରି ମୋତେ ଜଣା ଯାଉଚି ହଜୁର ।'

'ଆରେ ଦେଖିଚ ମ ତୋ' ପୁଅଟାକୁ । ଲୁହାକାମ କରୁଚି ତ । କାହିଁ ରଜାପୁଅର କୋଉ ଲକ୍ଷଣ ତ ମୁଁ ଦେଖି ପାରିଲିନି ।' ରଜା ତାଙ୍କ ଦାଢ଼ି ଆଉଁସୁ ଥିଲେ ।

ସେ ବୁଢ଼ାକୁ ବିଦାୟ କରିଦେଲେ । ବୁଢ଼ା କିଛି ବୁଝିପାରିଲାନି । ତା' ସ୍ତ୍ରୀକୁ ଏକଥା କହିଲା । ସିଏ ବି ସମଝି ପାରିଲାନି କଥାଟା । ଶେଷକୁ କାଇମାନ୍ ଗଲା ଜଣେ ଯୋଗୀ ପାଖକୁ ।

ଯୋଗୀ କହିଲେ, 'ଚିନ୍ତାର କିଛି କାରଣ ନାହିଁ କାଇମାନ୍। ରଜା ତମକୁ ଆଦର ଗଉରବ କରି ରାଜବାଟି ନେଲେ କିଆଁ ! ଏଇଥିପାଇଁ ଚିନ୍ତା କ'ଣ ଦରକାର ।'

'ମୋ' ପୁଅଟି କ'ଣ ରାଜପରିବାର କେହି କି ?'

'ସେ କଥା ପଛେ କହିବି । ପିଅ ଏ ପାଣି । ଟିକେ ଥିର୍ ହୋଇ ବସ । ମୋ' ଆଶ୍ରମରେ ରୁହ । ମୁଁ ତମକୁ ସବୁକଥା କହିବି ।'

କାଇମାନ୍ ସେଠି ପୂରା ଦୁଇଦିନ ଅପେକ୍ଷା କଲା ।

ଦୁଇଦିନକାଳ ଯୋଗୀ ଧ୍ୟାନରେ ରହିଲେ, ପୂଜା କଲେ । ସେ କହିଲେ,

'ଏଇ ଯେ ଚେକ ବଢ଼ାଇ
ସିଏ କାନେ ମୋ'ର କହଇ,
ପେଚକ ଉଲୁକ ରାତିରେ
କହିଗଲେ ମୋ'ର କାନରେ ।
କପୋତ କପୋତୀ ଗୁମରି
କହିଗଲେ, ଧୂମକୁଣ୍ଡଳୀ
ଝିଙ୍କାଧୂଳ ସବୁ କହିଲେ,
ଏ ପୁଅ ଜନମ ପଡ଼ିଲେ
ଇଏ ରଜାଘର କୁମର
ପାଳିତ ହୋଇଚି ତୁମର ।'

ଏହାପରେ ସେ ସମଗ୍ର କାହାଣୀ ଫିଟାଇ କହିଲେ । ସାବଧାନ କରାଇଦେଲେ, 'ପୁଅକୁ ଟିକେ ସମ୍ଭାଳି ନେ କାଇମାନ । ବୁଢ଼ା ରଜା ନାଗ । ତା'ର ବହୁତ ରାଗ । ସିଏ ଖୋଜୁଚି ବାଗ । ପାଇଲେ ତମ ପୁଅର ବେକ ମୋଡ଼ିବ ଆଗ । ହଁ ..

ଶୁଣ । ପୁଅକୁ ଏସବୁ କୁହନ କହୁ । ବେଳ ପଡ଼ିଲେ, ଯାଇ ଅଣ୍ଟାଚକୁ ଖୋଲିବ । ତରତର ହେବାର କହୁ କାରଣ ନାହିଁ । ଏଣ୍ଣଗେ ଗାଁକୁ ଯାଆନ । ପୁଅ ଉପରେ କହୁ ବପଦ ପଡ଼ପାରେ । ସିଧା ତା' ପାଖକୁ ଯାଅ । ତା ପରେ ଯାଇ ଗାଁକଥା ! ବୁଝିଲ ! ଡେର କରନ !'

କାଇମାନ୍ ଯୋଗୀଙ୍କି ପ୍ରଣାମ କଲ । ସେ ସିଧା ଗଲ ପ୍ରଜାଙ୍କୁରଣ । ସେଠି ପୁଅପାଖରେ ପହଂଚ ଦେଖେ ଯେ, ରଜା ଏଡ଼େ ଏଡ଼େ ଆଖିରେ ପିଲଟିକି ଗୃହିଁ ରହିଚନ୍ତ । ତାଙ୍କ ଆଖି ଖାଲ ଜଳୁଚ । ସତେ ଅବା ସିଏ ତାକୁ କଞ୍ଚା ଖାଇଯିବେ । ସାମ୍ନାରେ ଗୋଟାଏ ବଡ଼ ଯନ୍ତା । ଏ ଯନ୍ତାଟା ବାଘଜନ୍ତା ।

ରଜା ପଚ୍ଚରଲେ, 'ଏ ଯନ୍ତାଟା ଦୁଇଟା ବାଘପାଇଁ ଠିକ୍ ହବନା !

'ନଶ୍ଚୟ ହବ ହଜୁର !' ପୁଅ କହିଲ ।

'ଞ୍ଚର୍କି ଯାଇପାରେ !'

'ନା ହଜୁର, ସବୁଆଡ଼ ବୁଲବୁଲ ପରଖି ପରଖି ମୁଁ ଗଢ଼ିଚ । ଯୋଡ଼ାଏ କଅାଁ ପୁଞ୍ଜାଏ କ ହ' ପୁଞ୍ଜା ବାଘ ତା' ଭିତରେ ରହିପାରିବେ । ଯନ୍ତା ଏସବୁକୁ ସମ୍ଭାଳ ନେବ ।'

'ହେଲ ! ମୋ'ର ବଶ୍ୱାସ ହେଉନ । ଭିତରକୁ ଯାଇ ଟିକେ ପରୀକ୍ଷା କରନେ ! ମୁଁ ତା'ପରେ ପଇସା ଦେବ !'

ପିଲଟି ଠିକ୍ ଭିତରକୁ ଯିବାକୁ ବାହାରଚ । ହଠାତ୍ କାଇମାନ ଡାକଦେଲ । ସେ ଗଲ କାଇମାନ୍ ପାଖକୁ । ତା'କାନରେ କାଇମାନ ଠାରି କହିଲ, 'ବାବାରେ, ରଜାର କଥାରେ ତା' ଭିତରେ ପଶନ । ରଜା ନଜେ ଭିତରେ ପଶି ଦେଖନ୍ତୁ !'

ରଜା ଚଢ଼ିଗଲେ ।

'ହୋ ବୁଢ଼ା, କ'ଣ ସେଠି ଫୁସ ଫାସ ହେଉଚୁ ? ଏ କମାର ପିଲା, ଭିତରେ ପଶି ଝିକେ ଠିକ୍‌ଠାକ୍ କରଦେବରେ !

'ନା ହଜୁର, ମୁଁ ଯାହା କରିବା କଥା କରସାରିଚ । ହଜୁର ଯଦି ଗୃହୁଁଚନ୍ତ ଭିତରେ ପଶି ଦୋଷ କାଢ଼ନ୍ତୁ । ମୁଁ ଠିକ୍ କରିଦେବି, ହଜୁରଙ୍କ ସାମ୍ନାରେ ।'

ରଜା ପଶିଲେ ଜନ୍ତାର ଭିତରେ । ଆଉ ସେଇ ଅବସରରେ ବୁଢ଼ା କାଇମାନ ଜନ୍ତାର ଖିଡ଼କି ପକାଇ ଦେଲା । ଜନ୍ତା ଭିତରେ ବନ୍ଦୀ ରହିଲେ ରଜା ।

ରଜା ପାଟିକଲେ, 'ବାନ୍ଧରେ ଏ କାଇମାନକୁ । ବାନ୍ଧରେ ଏ କମାର୍‌କୁ ।' ମାନ ତାଙ୍କ ଆଦେଶ କିଏ ଶୁଣିଲା, କିଏ ନ ଶୁଣିଲା । ହେଲେ, କେହି ସେ କଥାକୁ କାମରେ ପରିଣତ କଲେନି । ସମସ୍ତେ ଚାହିଁ ରହିଥିଲେ । ଆଜି ଜନ୍ତୁଚନ୍ତ ! ରଜା ଭାବିଥିଲେ କାଇମାନ ଓ ଏ ପିଲାଟିକି ଯନ୍ତାରେ ଭରିଦେବ । ନିଜେ ପଡ଼ିଗଲେ ।

କାଇମାନ ଖୋଲିଦେଲା ରଜାଙ୍କ ଜୀବନର ଇତିହାସ । ଲୋକେ ପାଟିକରି ଉଠିଲେ, 'ଏଇ ରଜା ! କେତେ ଲୋକଙ୍କୁ ସେ ହଇରାଣ ନ କରିଚ ! ସାରା ଦେଶ ଏହାରି ଯୋଗୁଁ କେତେ କଷ୍ଟ ନ ପାଇଛୁ । ଭଲ ହେଇଚ···ସିଏ ଯନ୍ତାରେ ପଡ଼ିଚ । ବେଶ୍ ହେଇଚ । ଯେମିତି କାମକୁ ସେମିତି ଫଳ···କୁଆ କପାଳକୁ ପାଚିଲା ବେଲ ।'

କାଇମାନ ସାଙ୍ଗକୁ ଆସି ଯୋଗୀ ପହଞ୍ଚିଗଲେ । ସିଏ କାଇମାନକୁ ସାବଧାନ କରାଇ ଦେଲେ ।

ଲୋକେ ତ ଆଗରୁ ଚାହିଁ ରହିଥିଲେ । ରଜାକୁ ଦଣ୍ଡିବା ପାଇଁ ଇଏ ଗୋଟେ ମଉକା ମିଳିଗଲା । ସେମାନେ ତାଙ୍କୁ ଗାଦିରୁ ତଡ଼ିଦେଲେ । ରଜାପୁଅକୁ ରଜା ବୋଲି ମାନିଲେ ।

ଏସବୁ ଭିତରେ, ବୁଢ଼ାରଜାଙ୍କ ନିଃଶ୍ୱାସ ପ୍ରଶ୍ୱାସ ବନ୍ଦ

ହୋଇଗଲା । ସେଇ ଯନ୍ତ୍ରା ଭିତରେ ସେ ମରିଗଲେ । ଲୋକେ ଆନନ୍ଦରେ ନାଚ କରି ଉଠିଲେ । ଚାରିଆଡ଼େ ନୂଆ ରଜାଙ୍କ ଜୟ ଜୟ ଗାନ ।

ନୂଆ ରଜାଙ୍କ ନାଁ ହେଲ, ବ୍ରୋବଜସ୍ନ .ତଉଙ୍ଗ୍ ଓ୍ୱାନାଗ ।

ବୁଢ଼ାରଜାଙ୍କ ଦ୍ୱିତୀୟ ରାଣୀର ଯୋଡ଼ ଦୁଇପୁଅ ଥିଲେ, ସେମାନେ ଛାଡ଼ିଲେନି । ତେଣୁ ବ୍ରୋବଜସ୍ନ ବେଶୀଦିନ ଶାନ୍ତିରେ ରାଜତ୍ୱ କରି-ପାରିଲେନି । ସେମାନଙ୍କ ହାତରେ ବ୍ରୋବଜସ୍ନଙ୍କ ପରାଜୟ ହେଲା ।

ସେ ପଳାଇଲେ ଜଙ୍ଗଲକୁ । ସାଥିରେ କେତେଜଣ ବିଶ୍ୱାସୀ-ଲୋକ । ବଡ଼ କଷ୍ଟରେ ବଣରେ ସେ ରହିଲେ । ଖାଇବା ପିଇବାର ଅସୁବିଧା ଖୁବ୍ ବେଶୀ । ଏଇ ସମୟରେ ମଜାଗଛର ଫଳ ଖାଇ ସେ ବଞ୍ଚିଥିଲେ । ମଜା ଗୋଟାଏ ପିତାଫଳ । କିନ୍ତୁ ବ୍ରୋବଜସ୍ନ ଦୁଃଖକଷ୍ଟ ଭିତରେ ଭାଗ୍ୟ ସହିତ ଲଢ଼ିଲେ । ଲଢ଼ିଲେ ଖୁବ୍ ସାହସ, ଧୈର୍ଯ୍ୟର ସହ । ଶେଷରେ ଗୋଟାଏ ବଡ଼ ରାଜ୍ୟ ଗଢ଼ିଲେ । ସେ ରାଜ୍ୟରେ ରହିଲା ଜାଭା, ମାଲୟ, ବୋର୍ଣ୍ଣିଓ, ମାଲୁକସ୍ ! ସେଇ ବିରାଟ ରାଜ୍ୟର ନାଁ ହେଲା ମଜାପାହିତ । ଏହାର ଅର୍ଥ ହେଲା ପିତା ଫଳ ।



# ମଳନ କୁଂଦଙ୍ଗ

ବୁଢ଼ୀଟିଏ । ବିଧବା । ବଡ଼ ଦୁଃଖରେ କାଳ କାଟୁଥାଏ । ଛୋଟ ଗୋଟିଏ କୁଡ଼ିଆ । ସେଇଠି ସେ ରହେ । ସାଥିରେ ତା'ର ପୁଅ । ସେଇ ଗୋଟିକ ବୋଲି ଛୁଆ ତା'ର ।

ବୁଢ଼ୀ ପୁଅକୁ ଖୁବ୍ ଆଦର କରେ । ଖୁବ୍ ସ୍ନେହରେ ତାକୁ ପାଳିଥାଏ । ହେଲେ, ଦୁନିଆରେ ଗୋଟାଏ ପ୍ରକାର ବାରବୁଲା ଲୋକ ଥାଆନ୍ତି । ସେମାନେ ଉଡ଼ାପକ୍ଷୀ । ଏଠି ଏ ଗଛରେ ବସିଲେଣି ତ, ସେଠି ଆଉ ଗୋଟେ ଗଛକୁ ଆସିଲେଣି । ଏମାନଙ୍କର ଘରଦୁଆର ଥାଏନା । ଏମିତି ପିଲା ଥିଲା ବୁଢ଼ୀର ପୁଅଟି । ବନବଣ ସେ ବୁଲୁଥାଏ । ଖାଇଦେଲା ଘରେ, ଉଡ଼ିଲା ବାହାରକୁ । ବୁଲିଲା ! ବୁଲିଲା, ଆସିଲା ପୁଣି ଖାଇବା ବେଳକୁ । ଘରେ କୁଟା ଗୋଟିକ ବି ଟୁକୁରା କରେନା । ସେଇଠି ଗିନାଟାଏ ପଡ଼ିଥିବ; ସିଏ ତାକୁ ଟେକିନେଇ ଠିକ୍ ଜାଗାରେ ରଖିଦେବନି ହୁଏତ ଗୋଡ଼ରେ ପନ୍ଦରଥର ଗୋଡ଼ାଇବ, ଫିଙ୍ଗିଦେବ । ହେଲେ ଘରର କିଛି କାମ କରିବନି ।

ବୁଢ଼ୀର ବଡ଼ ଚିନ୍ତା ।

ଏମିତି ଫୁଲ୍‌ଫାଙ୍କିଆ ପିଲାଟାଏ ତା' ବେକରେ ସାପହୋଇ ଝୁଲୁଛି ସିନା···ସିଏ କେଉଁ କାମକୁ ଯୋଗ୍ୟ ! ଅରଜନ କହିଲେ କଉଡ଼ିଟିଏ ନାହିଁ···ଗରଜନ ତା'ର କାନ୍ଧରେ କେତେ !! ଇଆଡ଼ୁ ଆସିବ ପାଠି । ସେଆଡ଼ୁ ଆସିବ ପାଠି । ହେ ଏ'ଟା ! ହେ ସେ'ଟା ! ବୁଢ଼ୀ ମନରେ ଅନେକ ଦୁଃଖ । ପୁଅ ନ ଥିଲେ ବରଂ ଭଲ···ଏମିତି ଅଯୋଗ୍ୟ

ପୁଅ, ଅବଗୁଣର ପୁଅ ଥାଇ କୋଉ ଲଭ ! ସେଥିରେ ପୁଅ କାହିଁ ବାହାରିକୁ ଯାଇଚ ତ ଯାଇଚ । ଝଗୁଶ ବୁଡ଼ୀ ତାକୁ ଗୁହିଁରହିଥିବ । ଘର ବାହାର ହେଉଥିବ । ପୁଅ ଏ ଲଟେ ଆସୁଚ ଘର ! ହେଲେ, ସେ ବୁଲ ବାଉଳିଆ ପିଲାଟିର ଏହାଡକୁ ନଜର ନ ଥାଏ । ମାଆର କଥା ସିଏ ଘଟେନ । ସେ ମନଇଚ୍ଛା ବୁଲି ବୁଲି ଫେରେ ଘରକୁ । ଯେତେବେଳେ ଫେରେ, ସେତେବେଳକୁ ସାହିପଡ଼ିଶାର ଲୋକେ ଆଉ ଚେଇଁ ରହି ନ ଥା'ନ୍ତି । ସମସ୍ତେ ପ୍ରାୟ ଶୋଇ ଯାଇଥାଆନ୍ତି ।

ଏମିତି ଦିନପ୍ରତି ଗୃଲେ ।

ବୁଢ଼ୀ ଅଥିଆମି ବଥିଆମି ହୋଇଗଲ୍ । ସିଏ ଆଉ ସହି ପାରିଲାନି । ଧୈର୍ଯ୍ୟଧରି ପାରିଲାନି । ପୁଅକୁ ବହୁତ ବୁଝାଇ ବୁଝାଇ ସେ ଥେସ୍ଥା-ହେଲି । ପୁଅର କାନରେ ବୁଢ଼ୀର କୌଣସି ଶବ୍ଦ ପଶିଲନି । ତା'ମନରେ କୌଣସି କଥାର ପ୍ରଭାବ ପଡ଼ିଲାନି ।

ଦିନେ ବୁଢ଼ୀ ବେମାର ଥାଏ । କାମକୁ ଯାଇ ନ ଥାଏ । ଘରେ ଖାଇବାକୁ ପିଇବାକୁ ନାଇଁ । ସେ ପୁଅ ଆସିଲା । ପାଟିତୁଣ୍ଡ କଲା । ମାଆ କହିଲି, 'ମଳନ କୁଂଦଙ୍ଗ, ତୁ ଏମିତି ହ'ନ ବାପ !'

'ମୁଁ ଖାଇନି କିଛି । ମୋ'ତେ ଖାଇବାକୁ ଦେ !'

'ତୋ'ତେ ଷୋହଳ ସତର ହେଲା !'

'ହଉ !'

'କିଛି କାମକଲୁନି । କେମିତି ଚଳିବୁ ! ମୁଁ ଯଦି ମରିଯାଏ... ତୋ'ର କ'ଣ ହେବ ଭାବୁଛୁ !'

'ତୁଚ ମରିନୁ । ମୁଁ ଭାବିବ କାହିଁ ?' ଚୁଙ୍ଗାଡ଼ ହେଲା ପୁଅ ମଳନ କୁଂଦଙ୍ଗ ।

'ଠିକ୍ ଅଛୁରେ ପୁଅ ! ମୁଁ ବଞ୍ଚିରହିଚ ଯେ ତୋ'ର ଖରାପ ହେଉଚ । ହେଲେ; ବାପଛାପର, ସୁନାଠା ପର, ତୁ ନିଜ ଗୋଡ଼ରେ ଠିଆ

ଦେବାର ଯୋଗାଡ଼ କର । ବାପ ମା' କ'ଣ ପୁଅଝିଅ ସଙ୍ଗରେ ଚିରଦିନ ରହିଥିବେ !'

ମଲନ କୁଂଦଙ୍ଗ ମନକୁ କ'ଣ ଆସିଲା କେଜାଣି···ସେ ସଙ୍ଗେ ସଙ୍ଗେ କହି ଉଠିଲା, 'ତେବେ ତୁ ଥା' ଏଇଠି । ମୁଁ ଗଲିଲି । ତୁ ମଲେ ମୁଁ ଆସିବି ।'

'ପୁଅରେ, ରହ ଟିକେ । ଖାଇକରି ଯାଇନୁ । କୋଉଠୁ କିଛି ମାଗିଆଣେ ।'

'ନା···ନା, ମୁଁ ଗଲିଲି । ଆଉ ଏ ଘରକୁ ମୁଁ ଫେରୁନି । ଏ ଘରେ ମୋ' ପାଇଁ କଅଣ ଅଛି ଯେ ଫେରିବି ! ଏଇଟା ମୋ' ଘର ନୁହେଁ ! ଏଇଟା ତୋ' ଘର !'

'ସେମିତି କହନାରେ ବାପା,···ସେମିତି କହନା । ଏ ଘର ତୋ'ର । ଏ ମାଟି ତୋ'ର । ତୋ' ମନ ହେଲେ ତୁ ଫେରିଆସିବୁ ଏ ଘରକୁ । ବଞ୍ଚି ଥିଲେ, ତୋ' ବାଟକୁ ଅନେଇଁ ରହିଥିବି ।' ମରିଗଲେ ସ୍ୱର୍ଗରେ ରହିଁ ରହିଥିବି ।'

ମଲନ କୁଂଦଙ୍ଗ୍ ପଛକୁ ଲେଉଟି ଟିକେ ଦେଲେ ଗହିଁଲାନି । ସେ ଧପ୍ ଧପ୍ ହୋଇ ଗଲିଗଲା ।

ମଲନ କୁଂଦଙ୍ଗ୍‌ର କପାଳ ଟିକେ ସଳଖ ଥିଲା । ସେ ସହରକୁ ଗଲା । ସେଠି ଜଣେ ଲୋକ ପାଖରେ କାମ କଲା । ଘରକୁ ଯିବାର ନାଇଁ । ଘରକୁ କିଛି କିଛି ନେବାର ନାଇଁ । ସେ ଲୋକର ଘର ମଲନର ଘର ହୋଇଗଲା । ସେ ଧନଗନ୍ତି ଲାଗିପଡ଼ିଲା ଲୋକଟିର ବ୍ୟବସାୟରେ ।

ଆଉ ସେ ଲୋକଟି ଥିଲା ନିଃସନ୍ତାନ । ସେ ଖୋଜୁଥିଲା ଭଲ ପିଲାଟିଏ । ମିଳଯାଆନ୍ତା ତ ! ସେ ତାହାକୁ ପୋଷ୍ୟପୁତ୍ର କରି ନିଅନ୍ତା । ତାକୁ ଏମିତି ପିଲାଟିଏ ଏବେ ମିଳିଯାଇଲା । ସେ ମଲନ କୁଂଦଙ୍ଗ୍‌କୁ ନିଜର ପୁଅ କରିନେଲା । ତା' ଭାଗ୍ୟକୁ ହଠାତ୍ କରି ଅଜସ୍ର ଧନସମ୍ପତ୍ତି ତା'

ପାଇଁ ଆସି ପହଞ୍ଚିଗଲା । ତା' ଛଡ଼ା ସିଏ ବ୍ୟବସାୟ ବାଣିଜ୍ୟ ଚଳାଇଲା । ଆଜି ସେ ଖଣ୍ଡମଣ୍ଡଳରେ ସେ ହେଲା ସବୁଠୁ ବଡ଼ ଧନୀ ସୌଦାଗର ।

ମଳନ କୁଂଦଙ୍ଗ ଭାବିଲା ସେ ଘରକୁ ଫେରିବ । ବୋଇତ ସଜା ହେଲା । ଅନେକ ଲୋକବାକ ଧରି ସେ ଫେରିଲା ତା' ଗାଆଁକୁ । ତା' ଗାଆଁର ନାଁ ପଦାଙ୍ଗ ।

ମଳନ କୁଂଦଙ୍ଗର ବେଶପୋଷାକ କ'ଣ ଦେଖିବ ! ରଜା ମହାରଜା ପରି ମୂଲ୍ୟବାନ କପଡ଼ାଲତା ପିନ୍ଧିଛି । ସେ ଗାଁକୁ ଆସୁଛି ଏ ଖବର ଘୁରିଆସିଲା ମାଡ଼ିଗଲା । ଲୋକେ କହିଲେ, ବାରବର୍ଷ ମଳନ କୁଂଦଙ୍ଗ କେତେ ଧନରତ୍ନ ନେଇ ଫେରି ଆସୁଛି ।

ମଳନ କୁଂଦଙ୍ଗର ବୋଇତ ଲଙ୍ଗର ଭିଡ଼ିଲା । ତାକୁ ବହୁତ ଲୋକ ଦେଖିବାକୁ ଗଲେ । ଗାଁ ଗୋଟାକରେ ଚହଳ ପଡ଼ିଯାଇଛି ।

ଏବେ ମଳନ କୁଂଦଙ୍ଗର ମାଆଟି ଥୁରୁଥୁରୁ ବୁଢ଼ୀ । ସେ ଭଲକରି ଚାଲିପାରୁନି । ତା' ଗୋଡ଼ ଥରୁଛି । ବାଡ଼ି ଖଣ୍ଡେ ନ ଧରିଲେ ତା'ର ଚଳବା ସମ୍ଭବ ହେଉନି । ତା' ଆଖିକି ଭଲ ଦିଶୁନି ।

ପୁଅ ଗଲାଦିନରୁ ସେ ବୁଢ଼ୀ ବସିଛି । ଆଜି ଆଜି ସେଇ ପୁଅ ଆସୁଛି । ତା' ଭିତରର ମାଆଟି ଆଜି ନୂଆକରି ଜୀବନ ପାଇଛି । ଲୋକେ କହିଲେ, 'ମଳନ କୁଂଦଙ୍ଗ ଆସୁଛି ପରା, ତମେ ଦେଖିଯିବନି !'

ବୁଢ଼ୀର ଅବସ୍ଥା ବଡ଼ ଖରାପ । ସିଏ ଯାହାତାହା କରି ଭାତମୁଠାଏ ରାନ୍ଧିଲା । ପୁଅପାଇଁ ନେଇଯିବ । ଏତେଦିନ ପରେ ଆସୁଛି···ପୁଅ । ସିଏ ତା'ର ଏକୋଇର ବଳ !

ବୁଢ଼ୀର ଭଲ ଲୁଗାପଟା ନାହିଁ । ସିଏ ମଇଳା ମସିଆ କପଡ଼ା ପିନ୍ଧିଛି । ସେ ସବୁ ପୁଣି ସାତସିଆଁ···ସାତ ଅଇଁଠା ।

ସେ ବୋଇତ ପାଖକୁ ଗଲା । ବାନ୍ଧିଆଣିଛି ସାଥିରେ ମୁଠିଏ ଭାତ ।

ଜଣେ ନାଉରୀ ପଚାରିଲା, 'କୁଆଡ଼େ ଆସୁଚୁ ବୁଢ଼ୀ ?'

'ପୁଅକୁ ଦେଖିବ ବାପା !'

'ପୁଅ ? କିଏ ତୁମର ପୁଅ ?'

'ଏଇ ମଲିନ କୁଂଦଙ୍ଗ !'

'ଅସମ୍ଭବ ! ତା' ହୋଇ ପାରେନା । ଏତେବଡ଼ ଧନୀଲୋକ ସେ ! ତାଙ୍କର ମା' ଏମିତି ଅବସ୍ଥାରେ ରହିପାରେନା !'

'ଦୁନିଆଁରେ କଅଣ ନହୋଇପାରେ...ଆଉ କ'ଣ ହୋଇ ପାରେନା...ସେ କଥାର ବିଚାର ପରେ କହିବ ପୁଅ ! ଯାଅ ତାକୁ କହିବ, ତା'ର ମାଆ ଆସିଛି !'

ଲୋକ ଗଲେ । ମଲିନ କୁଂଦଙ୍ଗଙ୍କୁ ଏକଥା କହିଲେ । ମଲିନ କୁଂଦଙ୍ଗଙ୍କୁ ମନରେ ଲାଜ ଲାଗିଲା । ସିଏ କେଡ଼େ ଧନୀ ! ଅଥଚ ଇଏ କ'ଣ ତା'ର ମାଆ ! ତା'ର ମାଆ ହେବାର ଯୋଗ୍ୟ ଇଏ ତ ! ଇଏ ତ ତା'ର ସବୁ ସମ୍ମାନକୁ ମାଟିରେ ମିଶାଇ ଦେବ । ନା...ନା, ସିଏ ତା'କୁ ମା' ବୋଲି ମାନିବନି । ତା'ର କେହି ମାଆ ନାହାନ୍ତି । ସେ ମାଝିଙ୍କୁ କହିଉଠିଲା, 'ମାଆ ! ଆରେ ମୋ'ର ମାଆ କୋଉଠୁ ଆସିଲା ! ପୁଣି ଏ ଜାଗାକୁ ସେ ଆସିବ କିଆଁ !'

'ମାନ ସେ ବୁଢ଼ୀ !'

'ସେ ଗୋଟେ ବାୟାଣୀ । ତଡ଼ିଦିଅ ତାହାକୁ ! ଯାଅ...!'

ଲୋକମାନେ ବୁଢ଼ୀପାଖକୁ ସେ ସମ୍ବାଦ ନେଇଗଲେ । ଚାଲି-ଯିବାକୁ କହିଲେ । ବୁଢ଼ୀ ମାନିଲାନି । ତା'ର ଏକା ଜିଦ୍ ସିଏ ତା' ପୁଅ ମଲିନ କୁଂଦଙ୍ଗ ପାଖକୁ ଯିବ । ଏ ବିଷୟକୁ ନେଇ ପାଟିଗୋଳ ହେଲା ।

ମଲିନକୁଂଦଙ୍ଗ ଏ ପାଟିଗୋଳ ଶୁଣି ରାଗି ଯାଇଗଲା । ସେ ଭଲମନ୍ଦ ଭୁଲିଗଲା ସେ ଭୁଲିଗଲା ସବୁ କିଛି । ସେ ଦଉଡ଼ି ଆସିଲା । ପାଟିକରି କହିଲା, 'ଭାଗ୍ ଏ ଜାଗାରୁ ବୁଢ଼ୀ । ତୁ ମୋ'ର ମାଆ ନୋହୁ । ମୋ'ର ମାଆ ବାପା କେହି ନାହାନ୍ତି ।'

ବୁଢ଼ୀ କହିଲା 'ହଁରେ ପୁଅ ! ତା' ଦେଖ କହିଲେ. ଏ ଭାତ ମୁଠିକ ଆଣିଚ । ବହୁଦିନରୁ ଚୋକଟ ଚୁଲି ଚୁଲି ମୋ' ଆଖିପାଣି ଆଖିରେ ମରିଚ । ଆଜ ମୋ' ହାତରନ୍ଧା ଭାତ ଜଳେ ତୁ ନେଇଯା' । ମୋର ଆଉ ଲୋଡ଼ାନାହିଁ କହୁ । ମୁଁ ଚାଲିଯିବ ।'

ମଳନ କୁଂଦଙ୍ଗର ରାଗ ଆହୁରି ବଢ଼ିଗଲା । ସେ ରାଗରେ ବୁଢ଼ୀକୁ ଲାତଟାଏ ମାରିଲା । ସେଇ ଲାତରେ ସେ କୂଳରେ ପଡ଼ିଲା । ତା' ଆଦରର ଭାତ ମୁଠିକ ଖସିପଡ଼ିଲା ସମୁଦ୍ର ଜଳରେ ।



ବୁଢ଼ୀର ଚେତା ବୁଡ଼ିଗଲା । ପାଖରେ ଯୋଉ ଲୋକମାନେ ଦେଖୁଥିଲେ, ସମସ୍ତଙ୍କ ମନରେ କରୁଣା ଆସିଲା । ଆଃ ! ଆଃରେ ! ବୁଢ଼ୀ ତୁ କଅାଁ ଆସିଲୁ ! ତୁ ତ ମରିଯାଇ ଥାଆନ୍ତୁ !

ବୁଢ଼ୀ କହୁନ୍ତା ପରେ ଚେତା ପାଇଲା ।

ଆଉ କାନ୍ଦକାନ୍ଦ କହିଲା,

ଆକାଶ ଜାଣେରେ ଧରଣୀ ଜାଣେ
ଜାଣେରେ ସାଗର ଜଳ,
ମୁହିଁ ହତଭାଗୀ ଜନମ ତୋ'ର,
ମାନ ଅବା ମନା କର ।
ଠାକୁରଙ୍କୁ ଏକା ଜଣା,
ଏଇଠାରେ ଆଉ ଏଇକ୍ଷିଣି ପରା
ଉଡ଼ିବ ସତର ବାନା !!'

ବୁଢ଼ୀର କଥା ସରିନ...ଆକାଶରେ ଅନ୍ଧାର ଘୋଟିଗଲା । ଘନଘନ ବିଜୁଳି ମାରିଲା । ତୋ ତୋ ମେଘ କରଡ଼ିଲା । ଏଡ଼େ ଏଡ଼େ ଲହରୀ ଉଠିଲା ସମୁଦ୍ରରେ । ବୋଇତଟିର ଲଙ୍ଗର ଛିଡ଼ିଗଲା । ବୋଇତଟା ଉପରେ ବଜ୍ରମାରିଲା । ହେଲେ, ମଳିନ କୁଂଦଙ୍ଗ ଛଡ଼ା ଆଉ କେହି ମରି ନ ଥିଲେ ।

ପରେ ମେଘ ଛାଡ଼ିଗଲା । ଦେଖାଗଲା ସମୁଦ୍ର କୂଳରେ ମଳିନ କୁଂଦଙ୍ଗର ବୋଇତଟା ପାହାଡ଼ ହୋଇଯାଇଚି । ତା' ଉପରେ ପଥର ମୂର୍ତ୍ତିଟାଏ : ସେ ମୂର୍ତ୍ତିଟା ଦୁଇ ହାତ ବଢ଼େଇଚି କୂଳ ଆଡ଼କୁ । ସେ ଯେପରି ଭିକ ମାଗୁଚି, 'କ୍ଷମା କର ମାଆ, କ୍ଷମା କର !'

ଯୋଉଠି ଏ ଘଟଣା ଘଟିଥିଲା...ସେ ଜାଗାର ନାଁ ପଦାଂଗ ! ଏବେ ବି ସେ ପାହାଡ଼...ସେ ମୂର୍ତ୍ତି...ସେଇ କାହାଣୀ କହି ଚାଲିଚନ୍ତି ।

